# ଅନ୍ୱେଷ

୭୧ତମ
ଅଖିଳମୋହନ ଜୟନ୍ତୀ ସ୍ମାରକୀ





## ଅଖିଳମୋହନ ପଟ୍ଟନାୟକ

ଆବିର୍ଭାବ : ୧୮ । ୧୨ । ୧୯୨୭

ତିରୋଧାନ : ୨୯ । ୧୧ । ୧୯୮୨

**ଓଡ଼ିଶାର କୃତବିଦ୍ୟ କଥାକାର**

**ତଥା**

**କଚ୍ଛପ ନାଟ୍ୟ ଆନ୍ଦୋଳନର ପ୍ରାଣ-ପ୍ରତିଷ୍ଠାତା**

# ୬୯ତମ ଜୟନ୍ତୀ ଉତ୍ସବ

ତା ୧୮ । ୧୨ । ୧୯୮୮, ସୂଚନା ଭବନ

ସଂଧ୍ୟା ୬ଟା

## କାର୍ଯ୍ୟକ୍ରମ

ସଭପତି, ଅତିଥି ଓ ବକ୍ତାଙ୍କୁ ସଭ ମଞ୍ଚ ଉପରକୁ ଆମନ୍ତ୍ରଣ ।

ଅଖିଳମୋହନଙ୍କ ଅମର ଆତ୍ମା ଉଦ୍ଦେଶ୍ୟରେ ପ୍ରଦୀପ ପ୍ରଜ୍ଜ୍ୱଳନ ।

"ମୋ ଲେଖା ମୋ ଜୀବନ"– ଅଖିଳମୋହନଙ୍କ ଅଭିଭାଷଣର କିୟଦଂଶ ଉପସ୍ଥାପନ ।

ଅଖିଳମୋହନଙ୍କ ରଚିତ କବିତା ଆବୃତ୍ତି ।

ଜୟନ୍ତୀ ପରିପ୍ରେକ୍ଷୀରେ "କଚ୍ଛପ ନାଟ୍ୟ ଆନ୍ଦୋଳନ"ର ଭୂମିକା– ସଂଗଠନର ସମ୍ପାଦକଙ୍କ ବକ୍ତବ୍ୟ ଉପସ୍ଥାପନ ।

ଅତିଥିଙ୍କ ଦ୍ୱାରା ଅଖିଳ ମୋହନ ଜୟନ୍ତୀ ସ୍ମାରକୀ 'ଅଖିଳେଶ୍ୱ'ର ଉନ୍ମୋଚନ ।

ଅଖିଳମୋହନ-ସ୍ମାରକୀ ସାହିତ୍ୟ-ପୁରସ୍କାର ପ୍ରଦାନ ।

ବକ୍ତା ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କ ଅଭିଭାଷଣ

ଅତିଥି ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ଅଭିଭାଷଣ

ସଭପତି ଶ୍ରୀ ଶରତ ପୂଜାରୀଙ୍କ ଅଭିଭାଷଣ

ଧନ୍ୟବାଦ ଅର୍ପଣ

ସଭ ଉଦ୍‌ଯାପନ

'କଚ୍ଛପ ନାଟ୍ୟ ଆନ୍ଦୋଳନ'ଦ୍ୱାରା ନାଟକ 'ଆମ କଥା ଆମ ଅବସ୍ଥା' ପରିବେଷଣ ।

# ଜାତକ-ଗଳ୍ପ

## ଅଖିଳ ମୋହନ ପଟ୍ଟନାୟକ

ବେନ୍‌ଫେ (BENFEY) କୁହନ୍ତି—ଗଳ୍ପ ଆଖ୍ୟାୟିକା ସୃଷ୍ଟି କରିବା ଯଦିଓ ମନୁଷ୍ୟର ସହଜାତ ଧର୍ମ, ତଥାପି ବର୍ତ୍ତମାନ ୟୁରୋପ ଓ ଏସିଆରେ ଥିବା ଲୋକଗଳ୍ପର ସୃଷ୍ଟି ହେଉଛି ଭାରତବର୍ଷ ।

ଭାରତର ଲୋକଗଳ୍ପ 'ଜାତକ'ର ବହୁ ପୂର୍ବରୁ ସୃଷ୍ଟ । ଜାତକ କିନ୍ତୁ ବୌଦ୍ଧମାନଙ୍କ ଦ୍ୱାରା ସୃଷ୍ଟ । ଜାତକର ଅଧିକାଂଶ ଗଳ୍ପ ବୌଦ୍ଧଧର୍ମର ପ୍ରସାର ପୂର୍ବରୁ । ତେଣୁ ଜାତକର ଗଳ୍ପମାନେ ଭାରତୀୟ ଲୋକଗଳ୍ପର ରୂପାନ୍ତର ମାତ୍ର ।

ପୂର୍ବେ ବିଶ୍ୱାସ କରାଯାଉଥିଲା ଯେ ବୌଦ୍ଧଧର୍ମ ଗଳ୍ପର ସ୍ରଷ୍ଟା । କାରଣ, ପଞ୍ଚତନ୍ତ୍ରରେ କିଛି କିଛି ବୌଦ୍ଧ ଲୋକକଥାର ସୂଚନା ମିଳିଥାଏ । କିନ୍ତୁ ଏହା ବର୍ତ୍ତମାନ ପରିଷ୍କାର ଯେ, ପଞ୍ଚତନ୍ତ୍ରର ଜନକ ବ୍ରାହ୍ମଣ ଓ ତାହା, ପରେ ବୌଦ୍ଧ ଓ ଜୈନମାନଙ୍କ ଦ୍ୱାରା ବିଭିନ୍ନ ରୂପରେ ସମ୍ପାଦିତ ହୋଇଛି ।

ଏହାର ପ୍ରମାଣ ଏହି ଯେ, ଡକ୍ଟର ହର୍ଟେଲ ତନ୍ତ୍ର ଆଖ୍ୟାୟିକାର ଅନୁବାଦ କରିଛନ୍ତି ଓ ତନ୍ତ୍ର ଆଖ୍ୟାୟିକା ପଞ୍ଚତନ୍ତ୍ରର ଅନେକ ପୂର୍ବରୁ—କିନ୍ତୁ ସେଥିରେ ବୌଦ୍ଧଧର୍ମର ନାମଗନ୍ଧ ବା କୌଣସି ସୂଚନା ମଧ୍ୟ ବିଦ୍ୟମାନ ନଥିଲା ।

ଜାତକର "ଖୁଦ୍ଦକ ନିକାୟ" ବିଭାଗରେ ଆମେ ଦେଖୁ ୫୪୭ଟି ଜାତକ—ପ୍ରତ୍ୟେକଟି ଗୌତମ ବୁଦ୍ଧଙ୍କ ଜୀବନର ଗୋଟିଏ ଅବତାରର କାହାଣୀ, ଯେତେବେଳେ ସେ ଥିଲେ ବୋଧିସତ୍ତ୍ୱ । (ବୁଦ୍ଧତ୍ୱ ପ୍ରାପ୍ତି ପୂର୍ବରୁ) । କିନ୍ତୁ ଏହା ସହିତ ମେଳ ଖାଇବାକୁ ୫୪୭ଟି ଗଳ୍ପ ନାହିଁ । ବେଳେବେଳେ ଏକା ଗଳ୍ପର ପୁନରାବୃତ୍ତି—ବା ପୁନର୍କଥନ—ପୁଣି ବେଳେବେଳେ ଗୋଟିଏ ଜନ୍ମରେ ଏକାଧିକ କାହାଣୀ । ବର୍ତ୍ତମାନର ଗୋଟିଏ ଘଟଣା ଉପରେ ଆଲୋକପାତ କରିବାକୁ ବୁଦ୍ଧ ଅତୀତ ଜୀବନର ଗୋଟିଏ କାହାଣୀ କହିବାକୁ ଆରମ୍ଭ କରନ୍ତି ଓ ସେଥିରୁ

ବର୍ତ୍ତମାନ ଅବସ୍ଥାର ଏକ ସମାଧାନ ବା ଏକ ନୈତିକ ଉପସଂହାର ଗ୍ରହଣ କରଯାଇଥାଏ ।

ଚରିତ୍ରମାନେ ସମସ୍ତେ ବୁଦ୍ଧ ନୁହନ୍ତି । ସେମାନେ ହୁଏତ ବୁଦ୍ଧଙ୍କ ପୂର୍ବରୁ । ସେମାନେ କେବଳ ସାଧାରଣ ହିନ୍ଦୁ ଚରିତ୍ର । ପ୍ରୟୋଜନ ବେଳେ ଗୋଟିଏ ଚରିତ୍ର ବୋଧିସତ୍ତ୍ୱ ହେଇଥିବା ଆବଶ୍ୟକ, ଏପରିକି ବୋଧିସତ୍ତ୍ୱ ଘଟଣାଟିକୁ ଦେଖିଥିଲେ ମଧ୍ୟ ଯଥେଷ୍ଟ ।

ଏ ପ୍ରସଙ୍ଗାନ୍ତରେ ଫ୍ରାଙ୍କେ (FRANKE) ତାଙ୍କର Jataka—Mahabharata—Parallalen (ଜାତକ–ମହାଭାରତ–ପାରଲଲେଁ)ରେ ଦୁଇ ଗ୍ରନ୍ଥର ବହୁ ଆଖ୍ୟାୟିକାର ତୁଳନା କରି ଦେଖାଇଛନ୍ତି ଯେ ଦୁଇଗ୍ରନ୍ଥର ବହୁ ସାମଞ୍ଜସ୍ୟ ଅଛି, କିନ୍ତୁ ସେମାନେ ପରସ୍ପର ଉପରେ ନିର୍ଭରଶୀଳ ନୁହନ୍ତି—ସେମାନେ ଉଭୟେ ଏକ ସାଧାରଣ ଉତ୍ସରିଷ୍ଟଳରୁ ସେମାନଙ୍କର ଉପଜୀବ୍ୟ ଆହରଣ କରିଛନ୍ତି ।

ଜାତକର ପଶୁ ଆଖ୍ୟାୟିକା ସହିତ ଏସପ୍ ଫେବ୍‌ଇର ସାମଞ୍ଜସ୍ୟ ଦେଖି ବେନ୍‌ଫେ ମନେକରିଥିଲେ, ପଞ୍ଚତନ୍ତ୍ର ବୋଧହୁଏ ଗ୍ରୀକ୍ ଆଖ୍ୟାୟିକାର ପ୍ରଭାବରେ ପ୍ରଭାବିତ । କିନ୍ତୁ ଭାରତର ବହୁ ବୌଦ୍ଧସ୍ତୂପରେ ଜାତକ ଆଖ୍ୟାୟିକା ଖୋଦିତ ହୋଇ ରହିଛି । ସ୍ତୂପ ଗୁଡ଼ିକର ବୟସ ଖ୍ରୀଷ୍ଟପୂର୍ବ ୨୫୦ରୁ ୨୦୦ ଭିତରେ । ତେଣୁ କୁହାଯାଇପାରେ ଜାତକ ଗଳ୍ପ ଖ୍ରୀଷ୍ଟପୂର୍ବ ୪୦୦ ଶତାବ୍ଦୀର, କାରଣ ତାହା ପ୍ରାଚୀନତର ଗଳ୍ପମାନଙ୍କ ଦ୍ୱାରା ପ୍ରଭାବିତ । ଏହା ପ୍ରମାଣ କରେ ଯେ, ଭାରତରେ ଗ୍ରୀକ୍ ପ୍ରଭାବରୁ ମୁକ୍ତ ଏକ ବୃହତ୍ତର ଗଳ୍ପ ଭଣ୍ଡାର ଥିଲା ।

ଏକଥା ଚିନ୍ତା କରିହୁଏ ନାହିଁ ଯେ ଜାତକର ୩୦୦ ଗଳ୍ପରୁ ଏସପ୍‌ର ୩୦୦ ଗଳ୍ପ ଆସିଛି ଓ ମାତ୍ର ୧୨ଟି ଗଳ୍ପର ସାମଞ୍ଜସ୍ୟ ଅଛି ।

ତାହାହେଲେ ଅଧିକାଂଶ ଗଳ୍ପକୁ ଭାରତୀୟ ବୋଲି ଧରିନେଲେ ଆମକୁ ଚିନ୍ତା କରିବାକୁ ହବ, (୧) ସିଂହଚର୍ମାଚ୍ଛାଦିତ ଗର୍ଦ୍ଦଭ, (୨) ମେଣ୍ଢାଛୁଆ ଓ ଗଧିଆ, (୩) କାଉ ଓ କୋକିଶିଆଳି ଇତ୍ୟାଦି ପ୍ରାୟ ୧୨ଟି ଗଳ୍ପର ଏସପ୍‌ଙ୍କ ସହିତ କିପରି ସାମଞ୍ଜସ୍ୟ ରହିଲା ?

ବିସ୍ମୃତ ହେବା ଅନୁଚିତ ଯେ ଆଲେକ୍‌ଜାଣ୍ଡାରଙ୍କ ଅନେକ ପୂର୍ବରୁ ଭାରତ ଓ ଗ୍ରୀସ୍ ଭିତରେ ଯାତାୟତ ପଥ ଥିଲା ଭାରତରୁ ପର୍ସିଆ ଓ ପର୍ସିଆରୁ ଏସିଆ-ମାଇନର୍ । ଡାରିୟସ ଦି ଗ୍ରେଟ୍‌ଙ୍କର ଶିଳାଲେଖରୁ (ଖ୍ରୀଷ୍ଟପୂର୍ବ ୫୨୧ରୁ ୪୮୫) ଜଣାଯାଏ, ଇଣ୍ଡସର ସନ୍ଧାନ । ଗ୍ରୀକ୍‌ର ପର୍ସିଆ ସହିତ ସମ୍ପର୍କ ସୁବିଦିତ। (ଜାତକରେ ଲିଖିତ Persian Tale of Hetorodus ଏକ ଉଦାହରଣ) । ତେଣୁ ପୂର୍ବର ଗଳ୍ପ ସବୁ ଗ୍ରୀସ୍‌କୁ ଯିବାରେ ଆଦୌ ଅସୁବିଧା ନାହିଁ । ତା'ପରେ ଏହା ୟୁରୋପର ସମସ୍ତ ଭାଷାରେ ବିଭିନ୍ନ ରାସ୍ତା ଦେଇ ପ୍ରବେଶ କରିଛି ।

ପଞ୍ଚତନ୍ତ୍ର ପ୍ରଥମେ ଗୋଟାଏ ଅସମ୍ପୂର୍ଣ୍ଣ ପାଣ୍ଡୁଲିପିରୁ ପହ୍ଲବୀକୁ ଅନୂଦିତ ହୋଇଥିଲା ଖ୍ରୀଷ୍ଟପୂର୍ବ ୫୭୯—୫୩୧ ଭିତରେ—ସାସାନ୍ତଦ୍ ରାଜା ଖୋସ୍ରୁ ଅନୁସୋରନ୍‌ଙ୍କ ଦ୍ୱାରା । ସେ ଅନୁବାଦ ମିଳୁ ନାହିଁ । କିନ୍ତୁ ପଞ୍ଚତନ୍ତ୍ର ସହିତ ପ୍ରଚୁର ସାମଞ୍ଜସ୍ୟ ଅଛି ସିରିଆ ଓ ଆରବ ସାହିତ୍ୟର କାଲିଲା ଓ ଡ଼ିମ୍ନାର । ଇଂରାଜୀ ସାହିତ୍ୟରେ ତାହାର ଅନୁରୂପ ହେଲା—'Fables of Bidpai'.



[H. T. Francis ଓ E. J. Thomasଙ୍କ ଦ୍ୱାରା ସମ୍ପାଦିତ JATAKA TALES (୧୯୫୭ ସଂସ୍କରଣ) ପଢ଼ିବା ପରେ ଲେଖକ ଏଇ ଲେଖାଟିକୁ ତାଙ୍କର 'ନୋଟ୍-ବୁକ୍'ରେ ଟିପି ରଖିଥିଲେ । ଲେଖାଟି ସେଇ ଟିପାଖାତାରୁ ଉଦ୍ଧୃତ ।]

ସୌଜନ୍ୟ : ଜ୍ଞାନଦା ପଟ୍ଟନାୟକ

# ଅନ୍ଧଗଳିରେ ସ୍ୱପ୍ନର ହକର୍

## ସୀତାକାନ୍ତ ମହାପାତ୍ର

"ସୁଜାତା, ଯଦି ଜୀବନରେ କେବେ ତମେ ଏଇ କପୋତୀ ପରି ଉଡ଼ି ବୁଲିବାରେ କ୍ଳାନ୍ତ ହୋଇପଡ଼, ଜୀବନରେ ଯଦି କେବେ ଅନୁଭବ କର ତମର ମଧୁକ୍ଷର କ୍ଷୁଦ୍ରାୟତନ ଦୁଇଟି ସୁନ୍ଦର ଓଠରୁ ମଧୁ ନିଃଶେଷ ହୋଇ ଆସୁଛି ( ଭଗବାନ କରନ୍ତୁ, ତାହା ନ'ହଉ ) ତା'ହେଲେ ମତେ ସଂବାଦ ଦବ । ମୁଁ ପିଠିପଟେ ସ୍ୱପ୍ନର ଗଣ୍ଠିଟି ପକେଇ ବୁଲୁଛି ଦୁଆରକୁ ଦୁଆର– କେବେ ହୁଏତ ଧୂ ଧୂ ଦ୍ୱିପ୍ରହରର ଖରରେ ତମେ ଶୁଣିବ କିଏ ଜଣେ ଆଣ୍ଠୁଏ ଧୂଳି ଗୋଡ଼ରେ ରାସ୍ତାରେ ଡାକି ଡାକି ଯାଉଚି ସ୍ୱପ୍ନ-ନବ-ସ୍ୱପ୍ନ-ଅ-ଅ-ଅ ।" ( ଅନାଗତ ଫାଲ୍‌ଗୁନ )

ଅଖିଳମୋହନ ସେଇ "କିଏ ଜଣେ" ହେବାର ସ୍ୱପ୍ନ ନିଶ୍ଚୟ ବହୁବାର ଦେଖିଥିଲେ । ମୂଷା ଦୌଡ଼ରୁ ଓହରି ଯାଇ ନିରୋଳା ନିକାଞ୍ଚନରେ ବା ସମଦୃଷ୍ଟିଭଙ୍ଗୀ ସଂପନ୍ନ ବନ୍ଧୁଗହଣରେ ଜୀବନକୁ ଏକ ନାଟକ ଭବରେ ଦେଖିବା ପାଇଁ ତାଙ୍କର ଥିଲା ଅହେତୁକ ଆକର୍ଷଣ, ଅଦମନୀୟ ସ୍ନେହ । ନାଁ, ସେ ପଳାୟନ-ପନ୍ଥୀ ନଥିଲେ କିନ୍ତୁ ପ୍ରାତ୍ୟହିକ ଜୀବନର ପ୍ରାତ୍ୟହିକତା, ରଙ୍ଗହୀନ ଧୂସରତା ତାଙ୍କ ପାଇଁ ଥିଲା ଅସହ୍ୟ । ଉପରୋକ୍ତ ଉଦ୍ଧୃତି ଥିବା ଚିଠିଟି "ମନସ୍ତାତ୍ତ୍ୱିକର ଚିଠି" ଆକାରରେ ପ୍ରାୟ ତିରିଶି ବର୍ଷ ତଳେ ପ୍ରକାଶିତ ହୋଇଥିଲା । ମୃତ୍ୟୁର ତିନିଦିନ ଆଗରୁ ଲେଖିଥିବା ଶେଷ ଚିଠିଟି 'ଅନାଗତ ଫାଲ୍‌ଗୁନ' ବହିର ମୁଖବନ୍ଧ ଆକାରରେ ପ୍ରକାଶିତ ଓ ତା'ର ପ୍ରଥମ ଦୁଇ ଧାଡ଼ି ହେଲା "ଅନେକ କଥା ସହଜରେ ବିଶ୍ୱାସ କରି ହୁଏ ନାହିଁ । ମୁଁ ତ ଏବେ ବି ବିଶ୍ୱାସ କରିପାରେ ନାହିଁ ଯେ ପୃଥିବୀ ସୂର୍ଯ୍ୟ ଚାରିପଟେ ବୁଲୁଛି ।"

ଅଖିଳମୋହନଙ୍କ ସାରସ୍ୱତ ପ୍ରତିଭାର ସବୁଠୁଁ ବଡ଼ ଉଲ୍ଲେଖନୀୟ ଗୁଣ ହେଉଛି ଏଇ ସ୍ୱପ୍ନ-ପ୍ରବଣତା । ଜୀବନରେ ନାଟକୀୟତା ଓ ସ୍ୱପ୍ନ ପ୍ରତି ଏକ ଅଦ୍ଭୁତ ଦୁର୍ବଳତା । ଅଣନାଟକୀୟ ପରିବେଶ, ସ୍ୱପ୍ନହୀନ ରୁକ୍ଷ ପରିବେଶ ତାଙ୍କ ରଚନାରେ

ବିରଳ । ସ୍ୱପ୍ନ ଦେଖିବାର କ୍ଷମତା ଖୁବ୍ ବିରଳ । କୁହାଯାଏ ସ୍ୱପ୍ନର ଗୁଣ ଦ୍ୱାରା ହିଁ ମଣିଷର ବ୍ୟକ୍ତିତ୍ୱର ମାନ ନିର୍ଣ୍ଣୟ କରାଯାଇ ପାରେ । ଆମ ସମୟରେ କଳାସୃଷ୍ଟିରେ ତଥାକଥିତ ବାସ୍ତବତା ପ୍ରତି ଏତେ ବେଶୀ ଭୁଲ୍ ଗୁରୁତ୍ୱ ଆରୋପିତ କରାଯାଇଛି ଯେ ସ୍ୱପ୍ନଦର୍ଶୀମାନେ ଯେ ନିଛକ ପଳାୟନପନ୍ଥୀ ଏବଂ ସେମାନେ ବାସ୍ତବତା-ବିମୁଖ ଓ ବାସ୍ତବତାର ସାମ୍ନା କରିପାରନ୍ତି ନାହିଁ ଏମିତି ଏକ ମୋଟାମୋଟି ଧାରଣା ସୃଷ୍ଟି ହୋଇଛି । ସ୍ୱପ୍ନ ଓ ବାସ୍ତବତାର ଆପେକ୍ଷିକ ସଂଜ୍ଞା ଓ ତା'ର ନିର୍ଣ୍ଣାୟକ ସୀମାରେଖା ଯେ କ୍ରମଶଃ ଅସ୍ପଷ୍ଟ ହୋଇପଡୁଛି ଏକଥା ଆମେ ସ୍ୱୀକାର କରିବାକୁ ପ୍ରସ୍ତୁତ ହେଉନାହୁଁ । ମନସ୍ତତ୍ୱବିଜ୍ଞାନ, ସମାଜବିଜ୍ଞାନ, ନୃତତ୍ୱ, ସାମୂହିକ ଅବଚେତନ, ବ୍ୟକ୍ତିଗତ ଅବଚେତନ ଉଭୟକୁ ଅଧ୍ୟୟନ କରି ସେମାନଙ୍କର ନୂତନ ଦିଗନ୍ତମାନ ଉନ୍ମୋଚିତ ହୋଇଛି । ମନର, ହୃଦୟର, ବହୁ ଅଜଣା ବିଭବ ଏବେ ଆମେ କିଛି ପରିମାଣରେ ବୁଝି ପାରୁଛୁ । ତେଣୁ ଏକଥା କ୍ରମଶଃ ସ୍ପଷ୍ଟ ହୋଇ ଆସୁଛି ଯେ ବାସ୍ତବତା ଓ ସ୍ୱପ୍ନ ପରସ୍ପରର ସଂପୂର୍ଣ୍ଣ ପରିପନ୍ଥୀ ନୁହଁନ୍ତି; ଯେ ରୁକ୍ଷ ବାସ୍ତବତାକୁ ସାମ୍ନା କରିବାର ଦୃଢ଼ତା ଓ କ୍ଷମତା ସ୍ୱପ୍ନର କମନୀୟ ମସୃଣତାରୁ ହିଁ ଆହରଣ କରାଯାଇ ଥାଏ । ଅନ୍ୟପକ୍ଷରେ ସ୍ୱପ୍ନ କେବଳ ଉଭଟତା, ଅଣବାସ୍ତବତା ବା ଅବାସ୍ତବତାରେ ପରିଣତ ହୁଏନି ଯଦି ବାସ୍ତବତାର ମୋହ, ବାସ୍ତବ ଜଗତର ମୋହ ଆମକୁ ଧରି ରଖିଥାଏ ।

ଅଖିଳମୋହନ ସ୍ୱପ୍ନବିଳାସୀ ଥିଲେ ଏ କଥା କହିବାରେ ମୋର ଆଦୌ ଦ୍ୱିଧା ନୁହେଁ । କେବଳ ତାଙ୍କ ରଚନା (ଗଳ୍ପ, ଚିଠି, ଭ୍ରମଣ ବୃତ୍ତାନ୍ତ) ନୁହେଁ, ବ୍ୟକ୍ତିଗତ ସ୍ତରରେ ବନ୍ଧୁ ହିସାବରେ ତାଙ୍କୁ ଯେତିକି ଜାଣିଥିଲି ସେଥିରୁ ଉପରୋକ୍ତ ଅନୁଭବ ମୋ ପକ୍ଷେ ଅନସ୍ୱୀକାର୍ଯ୍ୟ । ଜୀବନକୁ ଅନ୍ଧଗଳି କହିବାରେ ଅଖିଳମୋହନଙ୍କର ଦ୍ୱିଧା ନ ଥିଲା । ଅନ୍ଧଗଳିଠୁଁ ମୁକ୍ତି ଖୋଜିବାର ପ୍ରଚେଷ୍ଟା, ଅନ୍ଧଗଳି ଭିତରେ ଗ୍ଲାଲିଥିବା ମଣିଷର ଆତ୍ମିକ ଧୈର୍ଯ୍ୟ, ସହନଶୀଳତା ପ୍ରତି ସମ୍ମାନ ଏବଂ ସର୍ବୋପରି ଅନ୍ଧଗଳି ଯେ ଆମର ଚିରନ୍ତନ ଭାଗ୍ୟ– ଏ ତିନୋଟିଯାକ କଥା ତାଙ୍କ ରଚନାର ଅନେକତ୍ର ଦ୍ରଷ୍ଟବ୍ୟ । ଯେଉଁ କାରଣରୁ ହେଉ ନା କାହିଁକି ଜୀବନର ଅଣନାଟକୀୟତା ଥିଲା ତାଙ୍କ ଦୃଷ୍ଟିରେ ମଣିଷ ପ୍ରତି ଈଶ୍ୱରଙ୍କର ଅନ୍ତିମ ଅଭିଶାପ । କ'ଣ ପାଇଁ ଏ ଅଭିଶାପ ଆଉ କ'ଣ ପାଇଁ ଏ ଅଭିଶାପରୁ ମୁକ୍ତି ଖୋଜାରେ ସାରା ଜୀବନ ଆମର ବହିଯାଏ —ଏଇକଥା ଏକାଧିକ ରଙ୍ଗ ଓ ରୂପ ନେଇ ତାଙ୍କ ରଚନାରେ ଦେଖାଦିଏ ।

ଅଥଚ ଜୀବନ ପ୍ରତି କି ଅସମ୍ଭବ ମୋହ ଥିଲା ମଣିଷଟାର ! ଯାହା ରଚନାର ଛତ୍ରେ ଛତ୍ରେ ଅନୁରଣିତ, ଗୁଞ୍ଜରିତ । ଜୀବନ କେତେ ଅଭିଶାପ ଓ କଷଣର, କେତେ ମୋହଗ୍ରସ୍ତ ମାୟାଗ୍ରସ୍ତ ପ୍ରବଞ୍ଚନାର ! ସତ କ'ଣ ଜାଣିଲେ ବି ତାକୁ ସ୍ୱୀକାର କରିବା ପାଇଁ ଅନିଚ୍ଛା । ଏଇଥିପାଇଁ ଯେ ମିଥ୍ୟାଶ୍ରର ପ୍ରତି ଆଗ୍ରହ ନୁହେଁ ବରଂ ସତ୍ୟର ଅସହନୀୟ ଆଘାତରୁ କଅଁଳ ହୃଦୟକୁ ବଞ୍ଚାଇବା ପାଇଁ ଏକ ଅପାରଗ ଦୁର୍ବଳତା, ଏକ ନିର୍ଲିପ୍ତ ଲୋଭ "ଡ଼ିମିରି ଫୁଲ" ଗଳ୍ପରେ ଅଶୋକକୁ ସଂଜୟ ହେବାକୁ ହିଁ ପଡ଼ିବ । ଅସତ୍ୟ ଯେ ନିରପରାଧ ଭ୍ରମକୁ, ମଧୁର ସ୍ୱପ୍ନକୁ ବଞ୍ଚେଇ ରଖିପାରେ । ସତ୍ୟ ଯେ ତାକୁ ଘର୍ଙ୍ଗି ଗୁଳି ଚୂର୍ ମାର୍ କରିଦେବ !! ମନେପଡ଼େ, ବହୁବର୍ଷ ତଳେ ଦୀର୍ଘ କଥୋପକଥନରେ କହିଥିଲି, ତମେ ଜଣେ incurable romantic' । ଅସ୍ୱୀକାର ସେ କରି ନଥିଲେ, ବରଞ୍ଚ କେଉଁ କାରଣରୁ, କିପରି ସେ ସେଥିରୁ ଆରୋଗ୍ୟ ଲାଭ କରି ନାହାନ୍ତି ଓ ଆଉ ଏବେ ଆରୋଗ୍ୟ ଲାଭ କରିବାର ମୋହ ବି ନାହିଁ ଏଇଥିରେ ବିତିଥିଲା ଦୀର୍ଘ ବେଳ ।

ତାଙ୍କର ଅଧିକାଂଶ ଚରିତ୍ର ତେଣୁ ସ୍ୱପ୍ନାବିଷ୍ଟ । ସେ ଉଚ୍ଚଶିକ୍ଷିତ, ସମ୍ଭ୍ରାନ୍ତ ପରିବାରର ହେଉ ବା ଟ୍ରେଡ୍ ୟୁନିୟନ୍‌ର ସାଧାରଣ ଶ୍ରମିକ ହେଉ ବା ଜୋତା ବିକ୍ରୀ କରୁଥିବା ସ୍ୱଳ୍ପ ବେତନଭୋଗୀ ମଣିଷଟିଏ ହେଉ ବା ସମୀର-କ୍ଷିତୀଶ୍ ଯୋଡ଼ି ହେଉ; ଯିଏ 'ଅନ୍ଧଗଳି'ରେ ନିଜର ଅସହାୟତାକୁ ଆଦରି ପରସ୍ପରର ଆଲିଙ୍ଗନ ଭିତରେ ଅଶ୍ରୁବର୍ଷଣହିଁ କରୁଥିଲେ ।

ଆଉ ଶେଷୋକ୍ତ ଗଳ୍ପରେ ସ୍ୱର ଉତ୍ତେଜିତ ହେବା ସତ୍ତ୍ୱେ କ୍ଷିତୀଶ୍ କଣ୍ଠରେ ସେଇ ସ୍ୱପ୍ନର ହିଁ ଗୁଞ୍ଜନ : " ତୁ ଗୋଟାଏ ସରକାରର ସଂଗଠିତ ପୁଲିସ୍ ସହିତ ଲଢେଇ କରି ପାରୁଚୁ– ବିବେକକୁ କ୍ଳୋରୋଫର୍ମ ଦେଇ ନିରୀହ ଲୋକଙ୍କର ଘରେ ନିଆଁ ଲଗେଇ ଦେଇ ପାରୁଚୁ– ନିଷ୍ପାପ ଶିଶୁକୁ ମା'ର କୋଳରୁ କାଢି ଆଣିପାରୁଚୁ, ଅଥଚ ତତେ ଲାଜ ଲାଗୁ ନାହିଁ କହିବାକୁ ଯେ ତୁ କେତେ ଜଣ ମୁଷ୍ଟିମେୟ ପର୍ଭର୍ଟ୍ ସାଡ଼ିଷ୍ଟମାନଙ୍କ ସହିତ ଲଢେଇ କରିପାରିବୁ ନାହିଁ ।" ବ୍ୟାବହାରିକ ଦୃଷ୍ଟିରେ ଏଠି ସ୍ୱପ୍ନ ନାହିଁ, ରୁକ୍ଷ ବାସ୍ତବତା ତା'ର ଭୟଙ୍କର ଡେଣାମେଲି ମାଡ଼ି ଆସୁଛି । କିୟତ୍‌କ୍ଷଣ ପରେ ଧ୍ୱଂସ ହିଁ ଅନିବାର୍ଯ୍ୟ ! କିନ୍ତୁ ସ୍ୱପ୍ନ ହିଁ ଶକ୍ତି ଦେଇଛି ପ୍ରତିରୋଧର, ପବିତ୍ର ବିପ୍ଳବର; ବିପ୍ଳବ ଯାହା କାମ୍ୟୁଙ୍କ ଭାଷାରେ ସ୍ନେହ ବିନା କେବେ ସମ୍ଭବ ହୁଏନି ନାଁ, ଟ୍ରେନ୍‌କୁ ଅଟକେଇବାକୁ ପଡ଼ିବ, ଅନ୍ଧଗଳିରୁ ମୁକ୍ତି ଲୋଡ଼ି ହୁଏତ ଜୀବନ ଦେବାକୁ ହେବ !!

ଆଉ ଏକ ଅପେକ୍ଷାକୃତ ଦୁର୍ବଳତର ସ୍ୱପ୍ନର ଦୃଷ୍ଟାନ୍ତ 'ନଦୀର ନାମ ଗଣତନ୍ତ୍ର'ର 'ଗଣୀବାଈ' ଗଳ୍ପରେ । ଗଣୀ ସେନ୍‌ର ପଦ୍ମପୋଖରୀରେ ଅବଗାହନ କ୍ଳାନ୍ତି ଆସିବା ଯାଏ, ସେ ଗତିରେ ପଦ୍ମକୋରକ ଦାନ୍ତ ନଖ ଦେଇ ଛିନ୍ନ ଭିନ୍ନ, ରକ୍ତକଣିକା ସବୁ ଅସମ୍ଭବ ଭାବରେ କ୍ଷିପ୍ତ । ଏଠି ସ୍ୱପ୍ନ ଉଦ୍ଭଟତା ସ୍ତରରେ ବା ଫ୍ୟାଣ୍ଟାସି ସ୍ତରରେ ଯାହା ମଣିଷର ଅନ୍ତର୍ନିହିତ କାମନାକୁ ସ୍ୱପ୍ନାୟିତ କରେ । ଆଉ ଗଳ୍ପର ନାୟକ ସ୍ୱପ୍ନାକ୍ରାନ୍ତ–ବାସ୍ତବତା ସହିତ ସାଲିସ୍ ସତ୍ତ୍ୱେ ଅବଚେତନ ମନରେ ହିଁ ସ୍ୱପ୍ନ ଏକ ନିଶା ପରି ଚହଟି ଲାଗିଛି । ବାଟସାରା ବାସ୍ତବତା "ବାଟରେ ଅବସର ବିନୋଦନ ପାଇଁ ଅନେକ କିଛି ମଧ୍ୟ ଅଛି । ପୋଖରୀଭର୍ତ୍ତି ବିଲତି ଦଳର ବାଇଗଣି ଫୁଲ ସବୁ ମଧ୍ୟ ଖୁବ୍ ଆନନ୍ଦ ଦିଏ । କେତେବେଳେ ଅସ୍ୱାଭାବିକ ଭାବରେ ବାଙ୍କି ଯାଇଥିବା ଗୋଟାଏ ନାଁ ନ ଜଣା ଗଛ ବା କେତେବେଳେ ଗୋଟାଏ ଗଛକୁ ନିର୍ମୂଳୀ ଲତା ଅତି ନିଷ୍ଠୁର ଭାବରେ ଚିପି ଚିପି ଅନ୍ତଃସାରଶୂନ୍ୟ କରି ସାରିଲଣି । କେତେବେଳେ ପୁଣି ଦଳେ ଶାଗୁଣା ତାଙ୍କର ବଡ଼ ବଡ଼ ଡେଣା ମେଲେଇ ଗୋଟାଏ ଜାଗାରେ ଚକ୍‌କର ଦଉଛନ୍ତି ।" ନାୟକ ଆମକୁ ବିଶ୍ୱାସ ଦେବାକୁ ଚାହାନ୍ତି ଯେ "ଲୋକଟା ଟିକେ ଆଡ଼ପାଗଳା" ଏଇ ଜନମତ ବା ଜନରବରୁ ନିଜକୁ ମୁକ୍ତି ଦେବାପାଇଁ ବାହାରର ଘଟଣାବଳୀରେ ନିର୍ଲିପ୍ତ ରହିବା ଆବଶ୍ୟକ । ଅଥଚ ସେ ନିଜେ ସେଇ ଆଡ଼ପାଗଳା ମନସ୍ତତ୍ତ୍ୱର ଖୁବ୍ ନିକଟରେ ଏବଂ ସ୍ୱପ୍ନ ହିଁ ତାଙ୍କୁ ନେଇଯାଏ ସେଇ ଇଲାକାକୁ ଯାହା ନାଟକୀୟତାରେ ଭରପୂର, ଯାହା ଦୁଇକଡ଼ ଗସ୍ତାର ରଙ୍ଗହୀନ ଧୂସରତା, ପ୍ରାତ୍ୟହିକତା ଓ ବିରକ୍ତିରୁ ଦେଇପାରେ ମୁକ୍ତି ।

ଆଉ ସ୍ୱପ୍ନ ଦେଖିବାର ଶୈଳୀ ବି ଅନନ୍ୟ । ଜୀବନ ପ୍ରତି ପ୍ରଗାଢ଼ ମୋହ ଥିବା ଲୋକ ହିଁ ଜୀବନକୁ ଖୁଚୁରା ରେଜା ପରି ସାଇତି ରଖେନି, ସବୁ କିଛି ଫୋପାଡ଼ି ଦବାକୁ ପ୍ରସ୍ତୁତ ଥାଏ । ଖାଲି ଯଦି ତା' ବଦଳରେ ସେ ଏଇ ଜୀବନକୁ ଜାଣିପାଏ ବୁଝିପାରେ, ସିଧାସଳଖ ଅନୁଭବି ପାରେ ।

"ସେଇଥିପାଇଁ କହେ ସୁଜାତା, ଜୀବନକୁ ଗସ୍ତାରେ ଘାଟରେ ଫୋପାଡ଼ି ଦିଅ, ସେ ତୁମ ପାଖକୁ ଠିକ୍ ପୋଷାକୁକୁର ପରି ଫେରି ଆସିବ ନୂତନ ଅଭିଜ୍ଞତା ନେଇ, ଅକୁଣ୍ଠିତ ଚିତ୍ତରେ ଜୀବନର ରାଜକୋଷରୁ ବ୍ୟୟ କରି ଚାଲ–ସେତିକି ସମୃଦ୍ଧଶାଳୀ ହେବ ତୁମର ଜୀବନ । ମୋଟ ଉପରେ ଜୀବନଟାକୁ ଅନୁଭବ କର, ଉପଭୋଗ କର, ପୂରାପୂରି ଫାଷ୍ଟହ୍ୟାଣ୍ଡ, ଅନ୍‌ଇନ୍‌ହିବିଟେଡ୍" । ଏତକ ପଢିଲା-

ବେଳେ ମୋର ମନେହୁଏ ଆଉ ଜଣେ ପ୍ରିୟ କବି ବନ୍ଧୁ, ୟୁଗୋସ୍ଲାଭିଆର ଇଜେଟ୍ ସାରର୍ଲିକ୍‌ଙ୍କ କଥା : "Poetry...........Poetry is toilet paper, Sitakant. It is life that matters."

ଆଉ କେତେବେଳେ ନୀରବତା ହୁଏ ଅସହ୍ୟ । କେହି ନାହିଁ, ସମଧର୍ମୀ କେହି ନାହିଁ, ସତୀର୍ଥ କେହି ନାହିଁ । "ଏ ନିସ୍ତବ୍ଧତା ଅସହ୍ୟ । ତଥାପି କେବେ-କେବେ ଗୋଟାଏ ଅସହ୍ୟ ଯନ୍ତ୍ରଣାରେ ଛଟ୍‌ପଟ୍ କରି ମୁଁ ଆକାଶକୁ ବଦ୍ଧମୁଷ୍ଟି ଉତ୍ତୋଳନ କରି ଚିତ୍‌କାର କରେ "ଆଲୋକ, ଆଲୋକ ଦିଅ, ମୋରି କଣ୍ଠସ୍ୱର ମୋରି ପାଖକୁ ଫେରି ଆସୁଛି ପ୍ରତିଧ୍ୱନି ଛଳରେ । 'ଆଲୋକ ନାହିଁ– ତମକୁ ଦେଖାଇବାକୁ କେବଳ ଅଛି blind understanding.''

ଅଖିଳମୋହନଙ୍କ ଅନାଗତ ଫାଲ୍‌ଗୁନରେ ଏଇ ସ୍ୱପ୍ନ କଥା, ଆହୁରି ସ୍ପଷ୍ଟ ଭବେ ନାୟକର ଅଭିମତରୁ ବାହାରି ଆସେ । "ଆଜି ନୁହେଁ, ଏଇପରି ଦିବାସ୍ୱପ୍ନ ଦେଖିବା ମୋର ପିଲାଦିନର ଅଭ୍ୟାସ । ପିଲାଦିନେ ମୋର ଗୋଟାଏ ହବି ଥିଲା ଖରାରେ ବୁଲି ବୁଲି ପ୍ରଜାପତିମାନଙ୍କର ଉଡିବୁଲିବା ଲକ୍ଷ୍ୟ କରିବା...... । ତା'ପରେ ତମର ଦିବାସ୍ୱପ୍ନକୁ ତମେ ଯେ କୌଣସି ରୂପ ଦେଇପାର । ଇଚ୍ଛାକଲେ ପ୍ରଜାପତିମାନେ ତାଙ୍କ ଭାଷାରେ କଥା କହି ପାରନ୍ତି ବା ଆମମାନଙ୍କ ଭାଷାରେ ମଧ୍ୟ କଥାବାର୍ତ୍ତା କରିପାରନ୍ତି ।"

ଏ ସ୍ୱପ୍ନ ଦିନେ ନା ଦିନେ ଭାଙ୍ଗିଯାଏ । ଭିତରର ମଣିଷକୁ କାଟେ । କିନ୍ତୁ ଭିତରର ସେଇ ମଣିଷ, ସେଇ ଦେବଶିଶୁ ବଞ୍ଚିରହେ । ସ୍ୱପ୍ନକୁ ସେଇ ତ ଅକ୍ଷତ ରଖେ– କେବଳ ନିଜ ସ୍ୱପ୍ନ ନୁହେଁ, ସାରା ଜଗତର ସ୍ୱପ୍ନକୁ । ସେ ସ୍ୱପ୍ନର ଦୁରନ୍ତ ଆହ୍ୱାନ ସାମ୍ନାରେ ବାସ୍ତବତା କେଡ଼େ ତୁଚ୍ଛ ! ବାସ୍ତବତା ସହ ସାମ୍ନାସାମ୍ନି କେଡ଼େ ଅର୍ଥହୀନ, କେତେ ପିଲା ଖେଳ ।

ଆଉ ବେଳେ ବେଳେ ସେଇ ସ୍ୱପ୍ନ ଟାଣେ ଅନାବିଷ୍କୃତ ଆନନ୍ଦର ସନ୍ଧାନରେ ନିଜକୁ ହଜେଇ ଦେବାକୁ । ସ୍ୱପ୍ନ କେବଳ ଆଡ଼ପାଗଳ କରେନି, ବେଳେ ବେଳେ ପାଗଳ ବି କରେ ୟୁକିଓମିଶିମା । ସୁପ୍ରସିଦ୍ଧ ଔପନ୍ୟାସିକ ଭୁଲିଯାଏ ବାସ୍ତବତାର ସୀମାରେଖା । ବାସ୍ତବ ଦୃଷ୍ଟିକୋଣରୁ ଦେଖିଲେ ତାଙ୍କ ହାରକିରି ଯେ ଏପରି ଉଦ୍ଭଟ ଦିଶେ ସେ କଥା କହିବା ନିଷ୍ପ୍ରୟୋଜନ । ମନେହୁଏ ତାଙ୍କ ପରି ପ୍ରତିଷ୍ଠିତ, ବିଜ୍ଞ ମାନ୍ୟଗଣ୍ୟ ଲୋକ କେମିତି ବା ଜାପାନର ସମ୍ରାଟ୍-ଶାସନ ବା ସାମ୍ରାଜ୍ୟବାଦୀ ବ୍ୟକ୍ତିର ଅବକ୍ଷୟରେ ମ୍ରିୟମାଣ ହୋଇ ଆତ୍ମହତ୍ୟା କଥା

ବିସ୍ମରିବେ । କିନ୍ତୁ ମୃତ୍ୟୁ ପୂର୍ବରୁ ଡ଼ାଏରୀରେ ରଚିତ ଏଇ କେତୋଟି ଧାଡ଼ି, ଯେଉଁମାନେ ଆଉ ଏକ ଛାନ୍ତ-ବାସ୍ତବ କଳ୍ପନା ଓ ସ୍ୱପ୍ନର ଆଭାସ ଦିଅନ୍ତି :

The falling petals
know a truth
denied
to the smiling flower
on the bough

ସ୍ୱପ୍ନ ଉବୁରି ଆସେ ବାସ୍ତବତାର ମୂର୍ତ୍ତିହୀନ, ଅନ୍ଧଗଳିରୁ । ମଣିଷର ପିଲା-ଦିନ ହାତ ଠାରି ଡାକେ । ସବୁ ମଣିଷଙ୍କ ପିଲାଦିନ ଏଇ ପୃଥିବୀର ପିଲାଦିନ; ତା'ର ପ୍ରଥମ ସୂର୍ଯ୍ୟୋଦୟ, ପ୍ରଥମ ପ୍ରେମ, ପ୍ରଥମ ପୁଲକ, ପ୍ରଥମ ଶିହରଣ, ପ୍ରଥମ ଆଖି ଲୁହ, ପ୍ରଥମ ବିଦାୟ, ପ୍ରଥମ ମୃତ୍ୟୁ । ବାସ୍ତବତା ମିଶିଯାଏ ସ୍ୱପ୍ନ ସାଙ୍ଗରେ, କଳ୍ପନା ମିଶିଯାଏ, ଫେଣ୍ଟି ହୋଇଯାଏ ପ୍ରାତ୍ୟହିକତା ସାଙ୍ଗରେ ।

ସ୍ୱପ୍ନ କିନ୍ତୁ କେବଳ କଳ୍ପନାର କଥା ନୁହେଁ, କି ହୃଦୟର କଥା ନୁହେଁ ଅଖିଳମୋହନଙ୍କ ପାଇଁ । ତାଙ୍କ ପାଇଁ ଆତ୍ମା ପ୍ରାୟଶଃ ଅବାନ୍ତର । ଅନୁପସ୍ଥିତ କି ନା' ସେ ଜାଣନ୍ତିନି, ଜାଣିବାକୁ ବି ବେଶୀ ଆଗ୍ରହୀ ନୁହନ୍ତି । ଅନୁଭବ ହୃଦୟର କଥା, ଦେହର କଥା । ଦେହର ଭାଷା ଅଛି । ଭାଷା ଅଛି ଆଖିର, ଅଙ୍ଗୁଳି ମୁଦ୍ରାର, ଗ୍ରୀବାର, ବକ୍ଷର, ସମଗ୍ର ଦେହର । ବହୁ ଗଳ୍ପରେ ନାୟକ ଓ ନାୟିକା ନିଜର ଦେହ-ଜନିତ ଅଭାବ ଓ କାମନା ଦ୍ୱାରା ଆବଦ୍ଧ ଓ ମୁକ୍ତ । ଆବଦ୍ଧ କାରଣ ଚେତନା ସେଇଠିକୁ ଫେରେଇ ଆଣେ ସକଳ ଇନ୍ଦ୍ରିୟାନୁଭୂତ ଘଟିକୁ. ବାରମ୍ବାର ଦୋହଲାଏ ଚିତ୍ତବୃତ୍ତିକୁ । ମୁକ୍ତ, କାରଣ ଦେହର ଶିହରଣ ହିଁ ଅନନ୍ତକୁ, ଆଉ ଲୋକମାନଙ୍କୁ ସେତୁ । ବେଳେବେଳେ ମୋତେ ଲାଗିଛି ଅଖିଳ-ମୋହନଙ୍କ ରଚନାରେ ସତେ ଯେମିତି ଦେହ ସ୍ୱପ୍ନର ଏକ ପରିପ୍ରକାଶ, ଅନ୍ୟତମ ଘନ ଓ ସାକାର ସ୍ୱରୂପ । ଦେହ ବି ସ୍ୱପ୍ନାବିଷ୍ଟ ହୋଇପାରେ, ସ୍ୱପ୍ନ ଭିତରେ ନିମଜ୍ଜିତ ରହି ଜୀବନ ଓ ମୃତ୍ୟୁ, ସାଥୀତ୍ୱ ଓ ନିଃସଙ୍ଗତା ଉଭୟକୁ ପାଖକୁ ଆଣି-ପାରେ, କୋଳେଇ ନେଇପାରେ ।

ଆଗରୁ କହିଛି, ଅଖିଳମୋହନ ଚରିତ୍ରମାନେ ମୁଖ୍ୟତଃ ନାଟକୀୟ । ତେଣୁ ଶୈଳୀ ମଧ୍ୟ ମୁଖ୍ୟତଃ ନାଟକୀୟ । ଭାଷା ଉତ୍‌କଣ୍ଠିତ, ନାଟକୀୟ । 'ଶୈଳୀ ହିଁ

ମଣିଷ' ବୋଲି ଯିଏ କହିଥିଲେ ତାଙ୍କ କଥାଟି ଅଖିଳମୋହନଙ୍କ ରଚନାରେ ଶତକଡ଼ା ଶହେ ସୁସ୍ପଷ୍ଟ । ଦେହ, ଦେହଜ ପ୍ରେମ, ପିଲାଦିନ ଓ ପିଲାଦିନର ସ୍ମୃତି ନଷ୍ଟାଲଜିଆର ଅତି ସୂକ୍ଷ୍ମ ଓ ସୁଗଭୀର ଆବେଦନ, ତା' ସହିତ ପାଦମିଳେଇ ଏପରିକି ବାହ୍ୟ ପ୍ରକୃତିର ରୂପ ଓ ରୂପାନ୍ତର, ଋତୁଚକ୍ର—ଏସବୁ ନାଟକୀୟତା ଓ ସ୍ୱପ୍ନାବେଶର ପରିମିତି ମାତ୍ର । ବହୁ ବିଭିନ୍ନ ପରିବେଶରେ କେବଳ ସେମାନଙ୍କର ରୂପାୟନ ।

ସ୍ୱପ୍ନଭଙ୍ଗ ପରେ ସ୍ୱପ୍ନ ହୁଏ ସ୍ମୃତି । ନାଟକୀୟ ପରିବେଶ ବେଳେବେଳେ ନିଜକୁ, ନାଟକୀୟତାରେ ଗଭୀର ବିଶ୍ୱାସୀ ଚରିତ୍ରକୁ ମନେହୁଏ ହାସ୍ୟକର । ସ୍ୱପ୍ନ ଓ ନାଟକ ସେତେବେଳେ ନିଅନ୍ତି ନୂଆ ରୂପ । ସ୍ୱପ୍ନଭଙ୍ଗ ହିଁ ଆଉ ଏକ ସ୍ୱପ୍ନର ବାସ୍ତବୀକରଣ, ଭଙ୍ଗାଘରକୁ ପୁଣି ଯୋଡ଼ିଯାଡ଼ି ଏକ କରିବାର ପ୍ରକ୍ରିୟା । ଆଉ ନାଟକକୁ ଭଲପାଇ ଜୀବନର ଅଣନାଟକୀୟତାରେ ବିରକ୍ତ ହୋଇ ନାଟକୀୟତାକୁ ଡାକି ଆଣି ପୁଣି ତାକୁ ହସରେ ଉଡ଼େଇବା ବେଳେ ବେଳେ ସମ୍ଭବ ହୁଏ । ସେ ଅବସ୍ଥା କଳାକାର ପାଇଁ, ସାହିତ୍ୟକାର ପାଇଁ ଏକ ମାନସିକ ବିଚ୍ୟୁତିରୁ ଓହରି ଆସିବା ପର୍ଯ୍ୟାୟର ଅବସ୍ଥା; ସେ ଅବସ୍ଥା ଏକ ଦୁଃଖଦ ସ୍ଥିତିର ଅବସ୍ଥା । ପିଲାଦିନ ସବୁ ମଣିଷଙ୍କ ଭିତରେ ବଞ୍ଚିରହେ । ଯାହା ଭିତରେ ଯେତେ ବେଶୀ ପରିମାଣରେ, ଯେତେ ସୂକ୍ଷ୍ମ ଭାବରେ ସେଇ ପିଲାଦିନ ବଞ୍ଚିରହେ ସେ ସେତିକି ତୀକ୍ଷ୍ଣ କଳାଦୃଷ୍ଟିସମ୍ପନ୍ନ କଳାକାର । ସେଇ "ନିର୍ବୋଧ ଅମରାବତୀ" କଥା ଅଖିଳମୋହନ ଭୁଲି ନ ଥିଲେ, ମାତ୍ର ସେ ଆଡ଼କୁ ପାଦ ବଢେଇ ଆଗେଇ ଗଲା ବେଳେ କେମିତି ବେଳେବେଳେ ଉଭୟ ସ୍ୱପ୍ନ ଓ ନାଟକୀୟତା ଦଗା ଦିଅନ୍ତି, ହଠାତ୍ କୁଆଡ଼େ ଉଭେଇ ଯାଆନ୍ତି, କିମ୍ବା ଅନ୍ୟପକ୍ଷରେ ହାସ୍ୟାସ୍ପଦ ମନେହୁଅନ୍ତି ସେ ଅବସ୍ଥାକୁ ଆସିବା ଆଗରୁ, ସେ ଅନୁଭବକୁ ସାମ୍ନା କରିବା ଆଗରୁ ସେ ଗଲେ ବାହାରି । ତାଙ୍କ ଚରିତ୍ରମାନଙ୍କର ବିଧିନିର୍ଦ୍ଦିଷ୍ଟ ନିର୍ବୋଧ ଅମରାବତୀ ଆଡ଼େ, ଗୋଡ଼ରେ ଆଡ଼େଇ ଦେଇ ଜ୍ଞାନବନ୍ତ, ଜ୍ଞାନଦୀପ୍ତ ଅମରାବତୀ ଓ ନର୍କ ଉଭୟକୁ ।

ବେଳେବେଳେ ଭାବେ ସେ ସ୍ୱପ୍ନ ଓ ନାଟକର ଆର ପଟ ଦେଖିବାକୁ ଆଉ ଟିକେ ବେଳ ନେଇଥାନ୍ତେ କି !

# ମଣିଷ

## ପ୍ରଭାତ କୁମାର ସିହ୍ନା

ଚାରକ୍ଷଣ୍ଠପୁଡ଼ାଟେ କଷିଦେଲା ଏଲିଜା– ତା'ର ବହୁବିଳମ୍ବିତ ଏକମାତ୍ର ପୁଅ ବିକୁ ଗାଲରେ । ବିକୁ ଚିଡ଼୍‌ଚିଡ଼ା ଗଡ଼ିଛାଡ଼ି କାନ୍ଦି ଉଠିଲା । ବେଶ୍ ରାହାଧରି କାନ୍ଦିଲା । ଏଲିଜା ତାକୁ ସାମନା ଫାଟକ ଗ୍ରୀଲ୍‌ରୁ ଟୋଳିଆଣି ଚଟାଣ ଉପରେ କଚାଡ଼ି ଦେଲା । ବିକୁ, ଏଲିଜାର ଟଣାଓଟରରେ ଗ୍ରୀଲ୍‌ରୁ ହାତ ଯୋଡ଼ାକ କାଢି ଦେଇଥିଲା ସିନା ହେଲେ ତା' ମନ କହୁ ନଥିଲା ସେଠୁ ଖସି ଆସିବାକୁ । ତୁ ଏକା ପିଲା ହେଇଚୁ ନା ଆଉ କିଏ ପିଲା ହେଇଛି ? ଏଲିଜା ଏପରି ରାଗରେ ଆଖି ବଡ଼-ବଡ଼ କରି ଶାସନ କଣ୍ଠରେ ଗର୍ଜି ଉଠୁଥିଲା ଓ ପିଲାଟାକୁ ଚାପଡ଼ା ଉପରେ ଚାପଡ଼ା କଷି ଦଉଥିଲା । ଘରେ ଏତେ ଖେଳନା ପଡ଼ିଛି, ତଦେ ଏଇ ବାଜେ ପିଲାଙ୍କ ସାଥୀରେ ଖେଳିବାକୁ କିଏ କହୁଚି । ହୁଁ......ମମିର ଚାପୁଡ଼ା ପରେ ଚାପୁଡ଼ା ବିକୁ ଗାଲରେ ଚିହ୍ନିତ ହୋଇଯାଏ । ବିକୁ ରାହାଧରି କାନ୍ଦେ । ପାଞ୍ଚ ବର୍ଷର ଛୋଟ ପିଲାଟେ, ସେ ବା ଦୁନିଆକୁ କେତେକେ ବୁଝିଚି ।

ବିକୁ ସେତେବେଳୁ ରାହାଧରି କାନ୍ଦିବାରେ ଲାଗିଛି । ଏଲିଜା ତାକୁ ଟଲେଇ ଟଲେଇ ଘରଭିତରକୁ ନେଇ ଯାଉଚି ପରଦା ଆଡ଼େଇ । ଏଲିଜା ଲକ୍ଷ୍ୟ-କରୁଥିଲା ସ୍ୱାମୀ ରୋହିଣୀକାନ୍ତ କିଛି ଗୋଟେ ଖୋଜିବା ଖୋଜିବା ଆଖି ନେଇ ପୋର୍ଟିକୋ ଆଡ଼କୁ ଚାଲି ଆସୁଚନ୍ତି । ରୋହିଣୀକାନ୍ତଙ୍କ ପାଇଁ ଆଜି ଏଇଟା ନୂଆ କଥା କେଉଁଠି ହେଲା । ନିତି ନିତି ଏଇ ପାଲା ହିଁ ତାଙ୍କୁ ବିଶେଷ ବ୍ୟଥିତ କରୁଚି । ସେ ଏଲିଜାକୁ କ'ଣ କହିବେ କହିବେ ହଉଥିଲେ କିନ୍ତୁ କହିପାରୁ ନଥିଲେ । ଭାବୁଥିଲେ ବିକୁ ଗାଲରେ ଆଉ ଦି' ଚାପଡ଼ା କଷି ଦେବେକି ! ଦେଖିଲେ ଏବେବି ବିକୁ ରାହାଛାଡ଼ି କାନ୍ଦୁଛି । ଘଟଣାଟା କ'ଣ ହେଇଥିବ ତାଙ୍କୁ ଆଜି ଅସ୍ପଷ୍ଟ ନୁହେଁ ।

ରୋହିଣୀକାନ୍ତ ପୋର୍ଟିକୋ ଉପରେ ଛିଡ଼ା ହେଇ କ'ଣ ଚିନ୍ତା କରୁଛନ୍ତି । ମନେ ମନେ ସମର୍ଥନ କରୁଥିବେ ନିଶ୍ଚୟ ଏଲିଜାକୁ । ଏଲିଜା କିଛି ଭୁଲ କରିନି । ସବୁ ମମି ମାନେ ଏମିତି ହେବାର ଚାହି । ନହେଲେ ସମ୍ଭ୍ରାନ୍ତ ଘରର ପିଲାଏ ଖରାପ ହୋଇଯିବେ ଯେ । ଠିକ୍ ଯେପରି ତାଙ୍କର ଗୋଟିଏ ମାତ୍ର ପୁଅ ବିକୁର

ଅବସ୍ଥା ହୋଇଛି । ପିଲଟା ଏକଦମ୍ ଖରାପ ହୋଇଗଲା । ଏଇ ଆଲ୍ତୁ ଫାଲ୍ତୁ ପିଲଙ୍କ ସାଥୀରେ ଖେଳା ଖେଳି କରି । ଦି' ପାହୁଣ୍ଡ ପୋର୍ଟିକୋ ପ୍ରାନ୍ତକୁ ଆଗେଇ ଆସିଲେ ରୋହିଣୀକାନ୍ତ । ପଡା ବାଆଁରେଇ ଅନେଇଲେ ସବୁଜ ଲନ୍, ଗେଟ୍, ଫୁଲଗଛ, ଏମିତି ଏମିତି ସାମନା ଝୁମ୍ପୁଡ଼ି ବସ୍ତିକୁ । ଗୋଟେ କୁଞ୍ଚିତ ନାସିକାର ଶରବ୍ୟ ହେଉଥିବା ପ୍ରତିଟି ଝୁମ୍ପୁଡ଼ି ଘର ଯେମିତି । ତାଙ୍କ ଅସୂୟା ଆଖିର ଘୃଣାରେ ଧର୍ଷିତା ପ୍ରତିଟି କୁଡ଼ିଆ ଯେମିତି । ମ୍ୟୁନ୍‌ସିପାଲ୍ଟି ଆଖିରେ କ'ଣ ବାଡ଼ ପଡ଼ିଛି ? ଦେଖାଯାଉନି ? ହେଇପାରେ ମ୍ୟୁନ୍‌ସିପାଲ୍ଟି କର୍ପୋରେସନ୍ ନହେବାଯାଏ ଅନେକ ପ୍ରତିବନ୍ଧକ ରହିଥିବ । କିନ୍ତୁ ବି.ଡ଼ି.ଏ, ସେ କ'ଣ କରୁଚି ? ତା' କ୍ଷମତା ତ ସୁଦୂର ପ୍ରସାରୀ । ଅନ୍ତତଃ ଏଠୁ ଏମାନଙ୍କୁ ସାଫ୍ କରି ଦିଆଯାଇ ପାରନ୍ତା । ଏହି ବଣୁଆ ଗୁଡ଼ାକୁ ହଟାଇ ଦିଆଯାଇ ପାରନ୍ତା । ଏମାନେ ଏହି ଭଦ୍ର ପରିବେଶକୁ କିପରି ପୁତି-ଗନ୍ଧମୟ କରି ଚାଲିଚନ୍ତି । ଅସମ୍ଭ୍ରାନ୍ତୀୟ କରି ଚାଲିଚନ୍ତି । ଯା'ର କ'ଣ କିଛି ଗୋଟେ ବାଟ ନାହିଁ– କର୍ଦ୍ଦମାକ୍ତ ମ୍ଳେଚ୍ଛତ୍ୱକୁ ଅବ୍ୟାହତି ଦେବା ପାଇଁ । ମଣିଷ ଯେ କେବଳ ଅସୁସ୍ଥ ହେଇଯିବ ତା' ନୁହେଁ ବରଂ ସବୁବେଳେ ମଣିଷକୁ ଇତରୀୟ ଭାବନାରେ ଘାଣ୍ଟି ହେବାକୁ ପଡ଼ିବ ।

ଏ ଜାନୁଆର୍ ଗୁଡାକ ଏମିତି କିମ୍ଭୂତକିମାକାର ଯେ ଯୋଉଠି ରହିବେ, ଖାଇବେ, ପିଇବେ, ସେଇଠି ଏକ୍ ଦୁଇ ସବୁ କରିବେ । ବସ୍‌ଷ୍ଟାଣ୍ଡ୍ ଏବଂ ରେଲୱେ୍ଷ୍ଟେସନ୍ ପାଖ ଦେଖି ସିଏ ଗୁଣ୍ଠ କୋଡ଼ିଏ ହଜାରକୁ କିଣିଥିଲେ ଯେ, ସେଇଟାକୁ ଏ ଅମଣିଷମାନେ ନର୍କପୁରୀ କରି ଦେଲେଣି । ଏ ନର୍କପୁରୀରେ ତାଙ୍କ ବାସଭବନର ନାମ 'ପାରିଜାତ' କ'ଣ ଶୋଭା ପାଉଛି । ଏହି ଅପରିଷ୍କାର ଲୋକ-ଗୁଡ଼ାକଙ୍କ ଜୀବନଧାରା ଯେ ତାଙ୍କର ଭାବଗମ୍ଭୀର ପରିବେଶକୁ ପରିହାସ କରି ଚାଲିଛି ସେଥିରେ ସେ ନିଃସନ୍ଦେହ । ତା' ସହିତ ପୁଣି ଏଇ ଅପରିଚ୍ଛନ୍ନ ପରିବେଶରେ ସେମାନଙ୍କ କ୍ରମବର୍ଦ୍ଧିଷ୍ଣୁ ଜନବିସ୍ଫୋରଣ ଅନ୍ୟ ଏକ ମୁଣ୍ଡବ୍ୟଥାର କାରଣ ହେଇ ଉଠୁଚି । ସିଏ କେବେ ବି ଏମାନଙ୍କୁ ସହି ପାରନ୍ତେ କି ? ରୋହିଣୀକାନ୍ତ ଯେତେବେଳେ ପେଗ୍ ପରେ ପେଗ୍ ମାରି ଚୁର୍ ହେଇକି ଗଡ଼ାପଡ଼ା ହେଉଥାନ୍ତି ସେତେବେଳେ ଏହି ଆପାଙ୍‌କ୍ତେୟଗୁଡ଼ାକ ମଧ୍ୟ ପଚାଶ ପଇସାର ଦେଶୀ ପିଇ-ଦେଇ ପଚାଶ ଟଙ୍କାର ବକାବକି କରୁ ଥାଆନ୍ତି । ରାସ୍ତା ଧାରରେ ଗଡ଼ନ୍ତି । ବାଡ଼ିଆପିଟା ହୁଅନ୍ତି । ଅଶ୍ରାବ୍ୟ ଭାଷାରେ ଗାଳିଗୁଲଜ ହୁଅନ୍ତି । ଏସବୁ ତାଙ୍କ ଶାନ୍ତି ଭଙ୍ଗର କାରଣ ନୁହେଁ ତ ଆଉ କ'ଣ ? ସିଏ କିମିତି ଚୁପ୍‌ଚାପ୍ ସଟ୍ ମାରି-ଦେଇ ଭି.ସି.ପି.ରେ ଅଫ୍‌ବିଟ୍ ଲେଡ୍ କରି ଦେଖୁଚନ୍ତି ସସ୍ତୀକ ।

ଏଇ ଇଲକାଟା କ'ଣ ଶିଳ୍ପ ମନ୍ତ୍ରଣାଳୟର ଆଖିରେ ପଡୁନି ? ଗୋଟେ କିଛି ଫ୍ୟାକ୍ଟ୍ରି ଫ୍ୟାକ୍ଟ୍ରି କଲେ ଏଠି ହୁଅନ୍ତା ନେଇଁ । ଏହି ଭୂତ ଗୁଡ଼ାକୁ ଏଠୁ ଉଠାଇ ଦେଇ ହୁଅନ୍ତା । ଏତେ ଆଡ଼େ ଏତେ ବମ୍ବାର୍ଡମେଣ୍ଟ— ଏଇଠି ହେଇ ଯାଆନ୍ତାନି । ସବୁ ଏକା ମିନିଟ୍‌କେ ସାଫ୍ ହେଇଯାଆନ୍ତା ! କିନ୍ତୁ ଏମାନେ ତ ଅଭୟ ପାଇଲା ପରି ବସା ବାନ୍ଧି ରହିଚନ୍ତି । ତା' ସାଙ୍ଗକୁ ସରକାର ପୁଣି ଅପରେସନ୍ ବ୍ଲାକ୍‌ବୋର୍ଡ ଯୋଜନାରେ ଏଇ ଅବାଞ୍ଛିତ ନୁଖୁରା ପିଲଗୁଡ଼ାକୁ ରୁଣ୍ଡାଇ ପ୍ଲାଟ୍‌ଫର୍ମରେ ପାଠ-ପଢାଉଛନ୍ତି ଦୁଧ, ରୁଟି ଖୁଆଇ । ହୁଁ, ଏମାନେ ପୁଣି ପଢିବେ । ଏମାନେ ଯଦିବ ପଢିବେ ଆମ ପିଲାଏ କ'ଣ କରିବେ । ଏଇ ବେଶ୍‌ବର୍ଣ୍ଣ ଗୁଡ଼ାଙ୍କ ପାଇଁ ତାଙ୍କ ପିଲାଟା ବି ଖରାପ ହୋଇଯିବାକୁ ବସିଲାଣି ।

ଘୃଣାରେ ଆଖି ଫେରାଇ ରୋହିଣୀକାନ୍ତବାବୁ ଘର ଭିତରକୁ ଫେରିଗଲେ । ତାଙ୍କର ଅଫିସ୍ ଯିବା ସମୟ ହେଇଯାଉଛି । ବଡ଼କଥା ହେଲା ତାଙ୍କ ପରି ଜଣେ ବହୁଦେଶୀୟ କମ୍ପାନୀର ବରିଷ୍ଠ ଏକ୍‌ଜିକ୍ୟୁଟିଭ୍‌ଙ୍କ ମୂଲ୍ୟବାନ ସମୟ ଭିତରେ ଏଇ ଅଜ୍ଞାତକୁଳଶୀଳମାନେ ଯେ ଭାଗୀଦାର ହେଇ ଯାଉଚନ୍ତି...... ।

ଯେତେ ସିଏ ଭାବନ୍ତି ଏଇ ବିଲ୍‌ଫାଇଲ୍ ଲୋକଙ୍କ କଥାକୁ ତାଙ୍କ ମୁଣ୍ଡରେ ପୁରାଇବେ ନାହିଁ, ସେତେ ସେତେ ସେମାନେ ଧସେଇ ପଶି ଯାଉଚନ୍ତି ।

ସେ ଏଥର ଆପାତତଃ କିଛିକ୍ଷଣ ପାଇଁ ଆଉ ଏ କଥାକୁ ଭାଳି ହେବେ ନାହିଁ । ବର୍ତ୍ତମାନ ସିଏ ବ୍ରେକ୍‌ଫାଷ୍ଟ କରିନେବେ ।

ଡାଇନିଂଟେବୁଲ୍ ପାଖରେ ବସି ଏଲିଜାଙ୍କୁ ଡାକିଲେ ସେ । ଏଲିଜା ବ୍ରେଡ୍-ବଟର ଜାମ ସଜେଇଦେଲେ । ଏଲିଜା ତାଙ୍କ ପାଖରେ ଖାଇବାକୁ ନ ବସିଲେ ତାଙ୍କ ଗଳାରେ ଗଳେ ନାହିଁ । ଡାଇନିଂ ଟେବଲ ପାଖରେ ବି ଗେମାନସ୍ ହେବା ଚାହି । ନହେଲେ ଯେତେ ଭଲ ପ୍ରିପାରେସନ୍ ହେଇଥିଲେ ବି ତାଙ୍କୁ ବୋର୍ ମନେ ହେଇଥାଏ ।

ରୋହିଣୀକାନ୍ତ ପଚାରିଲେ ଖାଉ ଖାଉ,

– ରିଙ୍କୁ ?

– ରାଧା ବୁଲେଇ ନେଇଯାଇଚି ।

– ପିଲାଟା ବେଶ୍ ଜିଦ୍‌ଖୋର ହେଇଯାଇଚି, ନୁହେଁ ?

– ଝୁର୍କି ବି । ହଁ, ରାଧାଟା କିନ୍ତୁ ପାରୁନି, ଗୋଟେ ଟ୍ରେନଡ୍ ଆୟା ଦେଖୁବଟି ?

– ଆଜି ବୁଝିବି । ଡେ ଏଣ୍ଡ୍ ନାଇଟ୍ ନର୍ସିଂହୋମ୍‌ର ଡକ୍ଟର ମିଶ୍ରଙ୍କୁ କହିବି ।

– ଟ୍ରାୟ ପ୍ଲିଜ୍ !

ବେସିନ ମିରର୍ ଆଗରେ ନିଜକୁ ବିଜ୍ଞପିତ କରଇ ନେଲେ ଗେହିଣୀକାନ୍ତ । ସବୁ ଠିକ୍ ଅଛି । କିଛି ଓଲମ୍ ବିଲମ୍ ହୋଇ ନାହିଁ । କୋର୍ଟ, ପ୍ୟାଣ୍ଟ, ଟାଏ୍ ସବୁ କିଛି । ଏଲି; ଦେଖୁଲ, ମୁଁ ସ୍ମାର୍ଟ ଲଗୁଛିତ ! ଏଲିଜା ହସିଲେ । ସେଇଥିରୁ ସେ ଜାଣିଲେ ସବୁ ଠିକ୍ ଅଛି । କିଛି ଅସଂଯତ ନୁହେଁ । ବେଳେବେଳେ ଏଲିଜା ସ୍ୱାମୀଙ୍କୁ ଡ୍ରେସ୍‌ଅପ୍ କରେଇ ଦେଇଥାନ୍ତି । ବୁଟ୍ ପଲିସ୍, ବ୍ୟାକ୍‌ସାଇଡ୍ ଇନ୍, ମ୍ୟାସେଜ୍, ସବୁ କିଛି । କୋଉ ଗୋଟେ କ୍ଲାସ୍ ହୋଟେଲ୍‌ରେ ତାଙ୍କର କନ୍‌ଫରେନ୍‌ସ ଅଛି । ସେଇଥିଲାଗି ଏତେ ପରିଚର୍ଯ୍ୟା ।

ଗେହିଣୀକାନ୍ତ କାର୍ ବାହାର କରୁ କରୁ କ'ଣ ଗୋଟେ ମାଗି ବସିଲେ । ଏଲିଜା ବଢ଼େଇ ଦେଲେ ଓ୍ୱାଟର୍ ବଟଲ୍ ।

ଏଲିଜା ବି ଜଣେ କର୍ମଜୀବୀ ମହିଳା । କୌଣସି ଏକ ଚେରିଟେବଲ୍ ଡ଼ିସ୍‌ପେନ୍‌ସରିରେ ମହିଳା ଡାକ୍ତର । ଗେହିଣୀକାନ୍ତ ଅଫିସ୍ ବାହାରିଗଲା ପରେ ସେ ବି ତାଙ୍କ କାର୍ଯ୍ୟରେ ବାହାରିଯା'ନ୍ତି । ଅଧଘଣ୍ଟାଏ ପର୍ଯ୍ୟନ୍ତ ଆଇନା ଆଗରେ ପ୍ରସାଧନ ଶେଷ କରି ଅପେକ୍ଷାରତ ଅଟୋରିକ୍‌ସାରେ ଯାଇ ବସନ୍ତି । ଘରେ ରହିଯାଏ ବିକୁ । ରଧାକୁ କହିଯାନ୍ତି ଟିକେ ଆଖି ରଖିବାକୁ, ଯେମିତିକି ବିକୁ ଏଇ ବାଟେ ପିଲାଗୁଡ଼ାଙ୍କ ସାଥିରେ ମିଶାମିଶି ନକରେ ।

ବିକୁ ବୋଧେ ବେଶ୍ କିଛି ଉପଲବ୍ଧି କରିପାରେ । ଏଇ ଯେମିତି 'ଡାଡ଼ି' ଆଉ 'ମମି' ଅନ୍ତର ହୋଇଯାଇଚନ୍ତି ଅନ୍ତତଃ ସନ୍ଧ୍ୟା ପର୍ଯ୍ୟନ୍ତ । ସୁତରାଂ ସେ କାନ୍ଦିବା ଆରମ୍ଭ କରିଦିଏ । ରଧା କୋଳରେ ରହି ବି ଗୋଡ଼ ହାତ ଛାଟିପିଟି ହୁଏ । ଆଉ କୋଳରେ ରହେନା । ରଧା ଦିକ୍‌ସିକ୍ ଆଉ ସହିପାରେନା, ଓହ୍ଲାଇ ଦିଏ କୋଳରୁ ବିକୁ'କୁ ।।

ସେତେବେଳେ ବିକୁ'କୁ ଆଉ ଦେଖେ କିଏ । ଏକା ଚିଲ୍ଲକେ ଯାଇ ଗ୍ରୀଲ୍ ଗେଟ୍ ପାଖରେ । ଚଟ୍‌କିନା ତା'ର କୁନି ହାତ ପାପୁଲି ଯୋଡ଼ାକ ଭର୍ତ୍ତି-କରିଦିଏ ଗ୍ରୀଲ୍ ମଝିରେ । ଆଉ ହାତ ପାପୁଲିଟିକୁ ଏପାଖ ସେପାଖ ଘୁରାଇବାକୁ ଲାଗେ । ଟା' ଟା' କରେ । ହସି ହସି ବହେ ଲାଳ ଗଡ଼ାଏ । ଝୁମ୍ପୁଡ଼ି ବସ୍ତିରୁ ବାରଜାତିଆ ପିଲାଏ କିଳିକିଳା ରଡ଼ି ଛାଡ଼ି ଧାଇଁ ଆସନ୍ତି ବିକୁ ପାଖକୁ । ବିକୁ ଉଲ୍ଲାସରେ ତାଳି ମାରେ । ନାଚେ ।

ପିଲାଏ କ'ଣ କରନ୍ତି ନା ବିକୁ ହାତକୁ ଗ୍ରୀଲ୍‌ର ବାହାର ପଟୁ ଟଣାଟଣି କରନ୍ତି । ଚୁମା ଦିଅନ୍ତି । ଦେହରେ ଘଷାନ୍ତି । ଗାଲରେ ମାରନ୍ତି । ଦାନ୍ତ ଦେଖେଇ ହସାହସି ହୁଅନ୍ତି । କିନ୍ତୁ କେହି କାହା ଭିତରେ ନିବିଡ଼ ଆଶ୍ଳେଷରେ ବାନ୍ଧି

ଯାଇ ପାରନ୍ତି ନାହିଁ । ସବୁ ମଝିରେ ପ୍ରତିବନ୍ଧକ ହେଇ ରହି ଯାଏ ଗ୍ରୀଲ୍ ଗେଟ୍ । ଗ୍ରୀଲ୍ ଗେଟ୍ ନୁହେଁ, ବରଂ...... ମମି ଓ ଡାଡି ।

ଘରରେ ବିଳୁ ତଳକୁ ଓହ୍ଲାଇ ପଡ଼ି ଭୂଇଁରେ ଗୋଡ଼ କଚାଡ଼ି ହୁଏ । ମନେ ମନେ ଭାବେ ମମି ଓ ଡାଡି ଦୁହେଁ କ'ଣ କେବେ ତା' ପରି ହେଇ ନଥିଲେ ? ତାଙ୍କୁ ଏମିତି ବନ୍ଧନ ଭିତରେ ରହିବାକୁ ପଡୁଥିଲା ? ହେଲେ ତା'ର ଆଜି ଅପରାଧ କ'ଣ ହୋଇପାରେ ? କ'ଣ ଏଇ ଧୂଳି ଧୂସରିତ ଦଳିତ ବାଳୁତଙ୍କ ସାଥୀରେ ମିଶିବା ? କିନ୍ତୁ ଏମାନେ କେତେ ନିରୀହ !!

ବିଳୁ ଯେତେବେଳେ ଦେଖି ପାରୁଥିଲା ଡାଡ଼ିଙ୍କ ଲାଲ୍ କାର୍ କିମ୍ବା ମମିଙ୍କ ଟାକ୍‌ସି ଦୂରରୁ ଆସୁଥିବାର, ସାଙ୍ଗେ ସାଙ୍ଗେ ସବୁ ପିଲାଙ୍କୁ ଇଙ୍ଗିତ ଦେଉଥିଲା ଘରକୁ ଚାଲିଯିବାକୁ । ପିଲାଏ ଚାଲି ଯାଆନ୍ତି, ଦାଣ୍ଡିଆ ମାରି ଏକା ନିଶ୍ୱାସକେ ସେଇ ଝୁପୁଡ଼ି ଘରମାନଙ୍କୁ ।

ଦିନେଦିନେ ଏମିତି ବି ବିତି ଯାଉଥିଲା । ବିଳୁ ବଗିଚାରୁ ଫୁଲ ଛିଡ଼େଇ ଦେଇ ବସ୍ତିଘରର ପିଲାଙ୍କୁ ଗ୍ରୀଲ୍ ଗେଟ୍ ଏପଟୁ ବାଣ୍ଟି ଦଉଥିଲା । କିନ୍ତୁ ତାହା ମମିଙ୍କ ଆଖିରେ ଦିନେ ପଡ଼ିଯାଇଥିଲା । ସେଦିନ ବେଯାଏ ମାଡ଼ ଖାଇଥିଲା ବିଳୁ । ରୋହିଣୀକାନ୍ତ ବି ସମର୍ଥନ କରିଥିଲେ ମମିଙ୍କୁ ।

ରଧାର ଇଏ ଆଖି ଦେଖା କଥା । ସିଏ ଏଇ ଘରେ ଚାକରାଣୀ ହେବାର ଦଶ ବରଷ ହୋଇ ଗଲାଣି । ସେତେବେଳେ ବିଳୁ ଏଲିଜାର ପେଟକୁ ଆସି ନଥାଏ । କି ଦୁଃଖ ଖୁନ୍ଦି ହେଇ ରହି ନଥିଲା ଏ ଘର ଗୋଟାକରେ ! କୁଆଡ଼େ ଏଲିଜାଙ୍କ ପେଟରେ ପୂର୍ବ ଚାରିଚାରିଟି ଗର୍ଭରେ କନ୍ୟାମାନେ ଜନ୍ମ ହେବାର ପ୍ରିନେଟାଲ୍ ସେକ୍‌ସ ଡ଼ିଟରମିନେସନ୍ ବା ଏମିନୋସେଣ୍ଟେସିସ୍ ପଦ୍ଧତିରେ ସ୍ତ୍ରୀରୋଗ ବିଶେଷଜ୍ଞ ଡାକ୍ତର ଚତୁର୍ବେଦୀଙ୍କ ପାଖରେ ପରୀକ୍ଷା କରାଇ ଗର୍ଭ ଭଙ୍ଗାଇ ଦେଇଥିଲେ । ପଞ୍ଚମ ଥର ଯେତେବେଳେ ଏଇ ଏମିନୋସେଣ୍ଟେସିସ୍ କରିବାକୁ ଯାଆନ୍ତି ତାଙ୍କ ଆଖି ଖୋସି ହୋଇ ଯାଇଥିଲା । କାରଣ ଡାକ୍ତର ଚତୁର୍ବେଦୀ ନିର୍ଭର ବାଣୀ ଦେଇଥିଲେ ପଞ୍ଚମ ସନ୍ତାନଟି ପୁତ୍ର ସନ୍ତାନ ହୋଇ ଜନ୍ମ ହେବ । ତାହାକୁ ଆଉ ସେ ଏମ୍. ଟି. ପି. କରାଇ ନଥିଲେ ।

କିନ୍ତୁ ବିଳୁ ଜନ୍ମ ହେଲାପରେ ତାକୁ ଅତିମାନବୀୟ ଢାଞ୍ଚାରେ ଗଢ଼ତୋଳିବାର ପରିକଳ୍ପନାହିଁ ସବୁବେଳେ ଗୋଟେ ବିବାଦୀୟ ପରିସ୍ଥିତି ମଧ୍ୟକୁ ରୋହିଣୀକାନ୍ତ ଏବଂ ଏଲିଜାଙ୍କୁ ଟାଣି ନେଉଛି ।

ଅଜସ୍ର ଗାଳି ମାଡ଼ରେ ମଧ୍ୟ ବିକୁ  ସ୍ୱଭାବରେ କୌଣସି ପରିବର୍ତ୍ତନ ଆସିନାହିଁ ଏଲିଜା ଏବଂ ରୋହିଣୀକାନ୍ତଙ୍କର ଏକାଧିକ ଅନୁଶାସନ ମଧ୍ୟରୁ ଦୁଇଟି କଠୋର ଅନୁଶାସନ ଯେପରି ପାଳନ କରଯାଏ ତାହା ଉପରେ ସଦାସର୍ବଦା କଡ଼ା ନଜର ରଖା ଯାଇଥିଲା । ପ୍ରଥମତଃ ବିକୁ ଯେପରି ସେହି ଝୁମ୍ପୁଡ଼ି ବସ୍ତିର ବାରଘରୋଳିଆ ପିଲାଙ୍କ ସାଥିରେ ମିଶି ପାରିବ ନାହିଁ କି ରଘୁ ତା' ସାଥିରେ ଯାଡୁ ସ୍ୟାଡୁ କଥାବାର୍ତ୍ତା ହୋଇ ପାରିବ ନାହିଁ । ବିକୁ ବାଜେ ପିଲାଙ୍କ ସାଥୀରେ ମିଶିଲେ ବାଜେ କଥା ଶିଖିବ ଓ ତା'ର ଇତର ପ୍ରକୃତିର ବିକାଶ ଘଟିବ ।

ପ୍ରତ୍ୟହ ବିକୁ ଗ୍ରୀଲ୍ ଗେଟ୍ ପାଖକୁ ଚାଲିଆସେ ଓ ଗ୍ରୀଲ୍ ମଝି ଫାଙ୍କରେ ଦୁଇ ହାତ ପୂରାଇ ଝୁମ୍ପୁଡ଼ି ବସ୍ତି ଘରର ପିଲାଙ୍କୁ ଡକାଇ ବେଶ୍ ମଜା କରେ । ଦିନେ ବିକୁ ଗେଟ୍ ଡେଇଁ ବାହାରକୁ ଚାଲିଗଲା । ଏତେ ବକଟେ ପିଲା, ଦେଢ଼ ମଣିଷ ଉଚ୍ଚାର ଗ୍ରୀଲ୍ ଫାଟକ ଡେଇଁଗଲା କିପରି ! ଆଶ୍ଚର୍ଯ୍ୟ ଲାଗେ । ଯେଉଁସବୁ ଝୁମ୍ପୁଡ଼ି ବସ୍ତିର ପିଲା ଆସି ରୁଣ୍ଡ ହେଉଥିଲେ ତାଙ୍କ ଭିତରେ ଜଣେ ଆଠ ନଅ ବର୍ଷର ଧୂର୍ତ୍ତ ପିଲା ଥିଲା । ସିଏ ଅନ୍ୟ ସାଥୀ ସଂଗାତଙ୍କୁ ସଂଗଠନ କରି କହିଥିଲା କି ବିକୁ'କୁ ତାଙ୍କ ବସ୍ତିକୁ ନେଇ ଆସିବାକୁ । ସଭିଏଁ ହଁ ହାଁ ମାରି ଖୁସୀରେ ନାଚି ଯାଇଥିଲେ ଘେରାଏ । ଆଉ ବିକୁ ବି ଅନେକ ଦିନରୁ ଆଉଟି ପାଉଟି ହେଉଥିଲା ରଙ୍ଗରେ, ଟିକେ ସାଥୀ ଭାଇଙ୍କ ସାଥିରେ ମନ ଖୋଲା ଖେଳ ଖେଳିବ ବୋଲି । ବଡ଼ ପିଲାଟି ଗ୍ରୀଲ୍ ଫାଟକ ଉପରକୁ ଉଠି ଆସିଥିଲା । ତଳୁ ବିକୁ'କୁ ଗ୍ରୀଲ୍ ଉପରେ ଚଢ଼ାଇ ଦେଇ ସେପଟକୁ ଚାଲି ଯାଇଥିଲା ଓ ବାହାର-ପଟୁ ଟୋକିନେଇଥିଲା ତାକୁ ।

ରଘୁର ଛାତି ବରଡ଼ା ପତର ପରି ଥରୁଥିଲା; ସେ କ'ଣ କହିବ– ବାବୁ ଆଉ ମା' ଆସିଲେ । ବିକୁ'କୁ କ'ଣ ସିଏ ଜାଣିକି ଛାଡ଼ି ଦେଇଛି । ସେ ପିଲାଟା କ'ଣ ଟିକେ ଡର ଦିଏ ରଘୁକୁ । କେତେ ବିଧା ଗୋଇଠା ଖାଆନ୍ତା ଅବା ସିଏ । ବାଧ୍ୟ ହେଇ ବିକୁ'କୁ ଖେଳିବାକୁ ଛାଡ଼ିଦେଇଥିଲା ସିଏ ଗ୍ରୀଲ୍ ଗେଟ୍ ପାଖକୁ ।

ରୋହିଣୀକାନ୍ତ ଲଞ୍ଚ ସମୟକୁ ଆସିବାରେ ଜାଣିବାକୁ ପାଇଲେ ରଘୁ ଠାରୁ । ରଘୁକୁ ଘରେ ଅଟକାଇ ରଖି ସିଧା ପୋଲିସ୍‌କୁ ଫୋନ୍ ଉଠାଇଲେ ।

ରଘୁ କାନ୍ଦିବାକୁ ଲାଗିଲା । ପୋଲିସ୍ ଜେରା କଲାରୁ ରଘୁ ସଠିକ୍ କହିପାରି ନଥିଲା । ତା'ର ସନ୍ଦେହର ଆଖି ଘୂରି ବୁଲୁଥିଲା ଏଇ ଝୁମ୍ପୁଡ଼ି ବସ୍ତିର ପିଲାଙ୍କ କାର୍ଯ୍ୟକଳାପ ଉପରେ ।

ରୋହିଣୀକାନ୍ତ ସସ୍ତୀକ ପୋଲିସ୍‌କୁ ଧରି ସାଗ ଝୁମ୍ପୁଡ଼ି ବସ୍ତିକୁ ତନ୍ନ ତନ୍ନ ହନ୍ତାଳି ଦେଲେ ।

ଗୋଟେ ଜାଗାରେ ସେମାନେ କ'ଣ ସବୁ ଦେଖୁଛନ୍ତି ! କିଛି ବାଳୁତ ଧୂଳି ଧୂସରିତ ପିଲାଏ ଜମି ଯାଇଛନ୍ତି ଗୋଟେ ବିରଟ ଆଗ୍ରହରେ ଯେମିତି । ଇସ୍ କି ଅପନ୍ତର ଜାଗା ସେଇଟା । କଦଳୀ ବାହୁଙ୍ଗା, ଟାୟାର, ଧୂଳି ମଳି କପଡ଼ା, ନାଳୁଆ କଢ଼ ପାଣିରେ ଏମାନଙ୍କର କି ଖେଳ । ଏମାନେ ତ ଏଇଠୁ ଜନ୍ମ । ଏଇଠି ବଢ଼ୁଚନ୍ତି । ସଭ୍ୟତା କ'ଣ ଜାଣିବେ ଏମାନେ । କଳା ମେଘ ଭିତରୁ ଜହ୍ନଟା ଚିକ୍ ଚିକ୍ ଝଟକିଲା ପରି ବିକୁ ହଠାତ୍ ଯେମିତି ସେହି ପିଲାଙ୍କ ଭିତରୁ ବାରିହେଇ ପଡୁଚି । ବିକୁ ଦୌଡ଼ି ପଳେଇ ଯାଉଥିଲା ବହୁତ ସନ୍ତର୍ପଣରେ; କିନ୍ତୁ ପୋଲିସ୍ ହାତରେ ଧରା ପଡ଼ିଗଲା ।

ଏଥର ପୋଲିସ୍ ବସ୍ତିବାଲାଙ୍କୁ ଧମକେଇ ଦେଇ ଚାଲିଗଲା କି ତାଙ୍କ ପିଲାଏ ଯେପରି ସେଠିକୁ ଖେଳିବାକୁ ନ'ଯାନ୍ତି । ବିକୁ ସାଥିରେ ମିଶାମିଶି ନକରନ୍ତି । ସେହି ଆଠ ନଅବର୍ଷର ପିଲାଟି ଏବଂ ତା'ର ବାଆ'କୁ ପୁଲିସ୍ ଦି'ରତି ଥାନା ହାଜତରେ ଭର୍ତ୍ତି କରିଦେଇଥିଲା ।

ହେଲେ ବିକୁର ସ୍ୱଭବରେ କିଛି ପରିବର୍ତ୍ତନ ଲକ୍ଷ୍ୟ କରଗଲାନି । ପୂର୍ବପରି ବିକୁ ଗ୍ରୀଲ ଗେଟ୍ ପାଖକୁ ଚାଲି ଆସେ । ଗ୍ରୀଲ ଫାଙ୍କରେ ହାତ ପୁରଇ ପାପୁଲି ବାହାରକୁ ହଲାଏ, ନାଚେ, ହସେ, ଟା'ଟା' କରେ । ଝୁମ୍ପୁଡିବସ୍ତିର ପିଲାଙ୍କୁ ଡାକେ । କିନ୍ତୁ ତା' କଥାର ଜବାବ୍ ଫେରେନା । କେହି ଜଣେ ଅବା ତା' ଡାକ ଶୁଣି ପାଖକୁ ଆସନ୍ତା ! ସବୁ ପିଲାଏ ସେହି ବାଟ ଦେଇ ଚାଲିଯା'ନ୍ତି କିନ୍ତୁ କେହି ଜଣେ ବି ତା' ଆଡ଼କୁ ନିଘା କରନ୍ତି ନାହିଁ । ସେମାନଙ୍କ ଭୟ—ଖେଳ ପୁଣି ଏତେ କାଳ । ପୁଲିସ୍-ବାବୁ ଆସିବ, କେତେ କଥା ହବ, ଧମକ ଚମକ ଚାଲିବ, ନାଇଁ ବାବା ନାଇଁ ।

ବିକୁ ଏଥର ଘରକୁ ଫେରି ଗୁମ୍‌ମାରି ବସେ । ତା'ର ପାଟି ନଖୋଲି ବି ସବୁକଥା ସିଏ ବୁଝିପାରେ । ଇଂଗିତ ଦେଇପାରେ ।

ରୋହିଣୀକାନ୍ତ ଏବଂ ଏଲିଜା ଭବିବାକୁ ଲାଗିଲେ, ବୋଧହୁଏ ଏଥର ବିକୁ ତାଙ୍କର ବାଟକୁ ଆସିଛି । ପିଲାଟା ଏଇଲେ ପଢିବା ବୟସର ହେଇ ଯାଇଚି ନିଷେ । ଖେଳକଉତୁକକୁ ସେ ଆଉ ମନ ଦେଉନାହିଁ ଯେ ! ଏଥର ସେ, କଥା ବି

କହିବ, ଆଉ ପାଠ ପଢ଼ାରେ ମନଦେବ । ଯେତେ ଚଞ୍ଚଳ ତାକୁ କିଣ୍ଡର-ଗାର୍ଟେନ୍‌ରେ ନାମ ଲେଖାଇ ଦିଆହେବ ସେତେ ଭଲ ।

କିନ୍ତୁ ବିକୁ ଯେ କଥା କହିବାର ଶକ୍ତି ପାଇନାହିଁ । ଛ' ବର୍ଷର ପିଲା ଆସି ହେଲାଣି, କଥା କହିବ କେବେ—ପାଠ ପଢିବ ବା କେବେ ।

ବେଳେବେଳେ ରୋହିଣୀକାନ୍ତ ପତ୍ନୀ ଏଲିଜାଙ୍କୁ କହନ୍ତି, ବିକୁର ଏ ଚରମ ଅସହାୟତା ପାଇଁ ଦାୟୀ ଏଇ ଝୁମ୍ପୁଡିବସ୍ତିର ଆପାଂକ୍ତେୟ ପିଲାଏ । ସେଇ-ମାନେ ତାକୁ ଖରାପ କରିଛନ୍ତି ।

ଏଲିଜାର ପରାମର୍ଶରେ ଉଭୟେ ଭେଲୋର ହସ୍‌ପିଟାଲ୍ ଗଲେ । ପୂର୍ବରୁ ଆପଏଣ୍ଟମେଣ୍ଟ ହୋଇଥିଲା ଡକ୍ଟର ଆଗ୍ରରିୟାଙ୍କ ସଙ୍ଗେ । ଡକ୍ଟର ଆଗ୍ରରିୟା ଇ.ଏନ୍.ଟି.ରେ ସ୍ପେସିଆଲାଇଜ୍ କରିଚନ୍ତି । ତାଙ୍କ ପରାମର୍ଶ ନେବାକୁ ଆସିଚନ୍ତି ଦୁହେଁ ବିକୁକୁ ସାଥୀରେ ଘେନି । ଦେଖାଯାଉ, କ'ଣ ହେଉଚି । ଏତେ ବଡ଼ ଡାକ୍ତର । ନିଶ୍ଚୟ ଏହି ସାମାନ୍ୟ ଅସୁବିଧାକୁ ସୁଧୁରି ଦେବେ । ବିକୁ ତାଙ୍କର ପୁଣି କଥା କହି ପାରିବ ।

ଡକ୍ଟର ଆଗ୍ରରିୟା ବିକୁକୁ ତନ୍ନ ତନ୍ନ କରି ପରୀକ୍ଷା କରୁଥିଲେ । ଦେଖିଲେ ଛୋଟ ଜିହ୍ୱାଟି ଅଛି । ତେବେ ? ବାକ୍‌ଶକ୍ତି ଲୋପ ପାଇବାର ଅନ୍ୟ ଏକ କାରଣ ତାଙ୍କ ଆଗରେ ସ୍ପଷ୍ଟ ହୋଇ ଉଠିଲା । ଏହି ଅସୁବିଧାର କାରଣ ଯେତେଟା ମାନସିକ କିମ୍ବା ଶାରୀରିକ ନୁହେଁ ସେତେ ବେଶି ପାରିପାର୍ଶ୍ୱିକ ତଥା ପାରିବାରିକ ।

ଡକ୍ଟର ଆଗ୍ରରିୟା ବିକୁର ହିଷ୍ଟ୍ରି ବିଷୟରେ ଜାଣିବାକୁ ଚାହିଁଲାରୁ ରୋହିଣୀକାନ୍ତ ଗୋଟି ଗୋଟି କରି ସବୁ ରପିଗଲେ ।

— ଆପଣମାନେ କ'ଣ ଭାବୁଚନ୍ତି ଆପଣଙ୍କ ପିଲା କଥା କହି ପାରିବ ?

— କାହିଁକି ନୁହେଁ ?

— ଘର ଭିତରେ ପୋଷା ଯାଇଥିବା ଶୁଆ, ଶାରୀ ସିନା କଥା କହିଥାନ୍ତି ! ବଣ-ଜଙ୍ଗଲର ଶୁଆ, ଶାରୀମାନେ କ'ଣ କଥା କହନ୍ତି ?

— ବିକୁର ଛୋଟ ଜିହ୍ୱା ଅଛିତ !

— ଅଛି; ପରୀକ୍ଷାରୁ ଜଣା ପଡିଚି । ହଁ, ଆହୁରି ମଧ୍ୟ ସିଏ ବଧିର ନୁହେଁ । ମୂକମାନେ ଏକାଧାରରେ ବଧିର ମଧ୍ୟ ।

— ବିଜ୍ଞାନ କ'ଣ ବ୍ୟର୍ଥ ଯିବ ଡକ୍ଟର ?

— ଆପଣମାନେ ହିଁ ଏହାର ବାକ୍‌ଶକ୍ତିହୀନତା ପାଇଁ ଏକାନ୍ତ ଭାବେ ଦାୟୀ । ଆପଣ ବିକୁକୁ ସମାଜଚ୍ୟୁତ କରାଇଛନ୍ତି । ଆପଣମାନେ ତାକୁ ମଣିଷରୁ ମେସିନ୍ କରି ଦେଇଚନ୍ତି । ସେ କେବେ ମଣିଷମାନଙ୍କ ସଂସ୍ପର୍ଶରେ ଆସିପାରି ନାହିଁ, କଥା କହିବ ବା' କୁଆଡୁ ! ତା' ସାଥୀରେ କେହି ଭଲରେ କଥା ହେଇନାହିଁ ଯାଡୁ ସ୍ୟାଡୁ । ତାକୁ ସବୁବେଳେ ଯନ୍ତ୍ରବତ ଚଳଣୀରେ ବାନ୍ଧି ଦିଆ ଯାଇଛି । ସେ ଯେପରି, ମୋର ଯା' ମନେହୁଏ ସିମ୍ପାଞ୍ଜି ଅବସ୍ଥାକୁ ଆସି ଯାଇଛି ।

— ଡକ୍ଟର !

— ଶିଶୁଟିଏ ସବୁବେଳେ ହସଖୁସୀ ଖେଳକୁଦରେ ମଜ୍ଜି ରହିବାକୁ ଚାହେଁ । ସେ ବୁଝେନା ଭଲମନ୍ଦ । ଧନୀ ଦରିଦ୍ର ପାର୍ଥକ୍ୟ ବି ବୁଝେନା । ସେ ମଣିଷଙ୍କ ପାଖରେ ସ୍ନେହ ପାଇ ବଞ୍ଚି ରହିବାକୁ ଚାହେଁ । ଅତିମାନବୀୟ ଆଦବ କାଏଦାରେ ନୁହେଁ । ଏଭଳି ପରିବେଶରେ ବଢୁଥିବା ଶିଶୁ କଥା କହିବା କଷ୍ଟକର ।

— ଡକ୍ଟର !!

— ସାରା ଜୀବନ ପାଇଁ ବିକୁ ଆପଣଙ୍କର ନିର୍ବାକ୍ ରହିବ । ମୁଁ ଦୁଃଖିତ ।

[ ଅଖିଳ ମୋହନ ସ୍ମାରକୀ ସାହିତ୍ୟ ପୁରସ୍କାର– ୧୯୮୮ ଦ୍ୱାରା ସମ୍ମାନିତ ଗଳ୍ପ ]



ଅଖିଳମୋହନଙ୍କ ୬୦ ତମ ଜୟନ୍ତୀ ଉତ୍ସବକୁ ପ୍ରଦୀପ ପ୍ରଜ୍ୱଳନ କରି ଉଦ୍‌ଘାଟନ କରୁଛନ୍ତି
ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ସାହିତ୍ୟିକ ତଥା ଉତ୍ସବର ମୁଖ୍ୟ ଅତିଥି ଶ୍ରୀ ଗୋପୀନାଥ ମହାନ୍ତି



ଜୟନ୍ତୀ ଉତ୍ସବ ସଭାମଞ୍ଚରେ ବାମରୁ ଡାହାଣକୁ
ଯଥାକ୍ରମେ : ଶ୍ରୀ ଚନ୍ଦ୍ରଶେଖର ରଥ, ଶ୍ରୀ ଗୋପୀନାଥ ମହାନ୍ତି, ଶ୍ରୀ ମହାପାତ୍ର ନୀଳମଣି ସାହୁ,
ଶ୍ରୀ ବିଭୂତି ପଟ୍ଟନାୟକ, ଶ୍ରୀ ଅବନୀ କୁମାର ବରାଳ ଓ ଶ୍ରୀ ଅମିତାଭ ବାଗ୍‌ଚୀ ।



୬୦ ତମ ଜୟନ୍ତୀ ଉତ୍ସବ ଉପଲକ୍ଷେ ପ୍ରକାଶିତ ସ୍ମରଣିକା 'ଅଖିଳେଷୁ'ର
ଉନ୍ମୋଚନ କରୁଛନ୍ତି ମୁଖ୍ୟଅତିଥି ଶ୍ରୀ ଗୋପୀନାଥ ମହାନ୍ତି



୬୦ତମ ଜୟନ୍ତୀ ଉତ୍ସବ ଉପଲକ୍ଷେ ମହାବିଦ୍ୟାଳୟ ସ୍ତରରେ ଆୟୋଜିତ
ଅଖିଳମୋହନ-ସ୍ମାରକୀ ଗଳ୍ପ ପ୍ରତିଯୋଗିତାର ବିଜୟିନୀ
କୁମାରୀ ସୁଚରିତା ମିଶ୍ର ମୁଖ୍ୟ ଅତିଥିଙ୍କ ଠାରୁ ପୁରସ୍କାର ଗ୍ରହଣ କରୁଛନ୍ତି ।

# ଆମ ବକ୍ତବ୍ୟ

ପୁଣି ଆଜି ସେହି ଦିନଟି ଉପସ୍ଥିତ– ସେଇ ଅପେକ୍ଷାର ଦିନଟି, ଆମର ପ୍ରାଣ-ପ୍ରତିଷ୍ଠାତା ଅଖିଳମୋହନଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାର ଅପୂର୍ବ ଅବସର !

ଗତବର୍ଷ ଏହି ଦିନଟିରେ ଆମେ ସମସ୍ତେ ଏକାଠି ହୋଇଥିଲେ । "ଅଖିଳ-ମୋହନ-ସ୍ମାରକୀ ସାହିତ୍ୟ-ପୁରସ୍କାର" ପ୍ରଦାନ ଅବସରରେ ଆମେ ପ୍ରତିଶ୍ରୁତି ଦେଇଥିଲୁ ଯେ, ଏହି ପୁରସ୍କାରର ପରିସରକୁ ଆମେ ଆହୁରି ବ୍ୟାପକ କରିବୁ ଓ ଏହାକୁ ଓଡ଼ିଆ ଭଷା ସାହିତ୍ୟ କ୍ଷେତ୍ରରେ ଏକ ଜନପ୍ରିୟ ଓ ଗୁଣାତ୍ମକ ପୁରସ୍କାର ରୂପେ ପ୍ରତିଷ୍ଠିତ କରିବୁ । ତେଣୁ, ଘୋଷଣା କରିଥିଲୁ ଯେ ୩୫ ବର୍ଷରୁ କମ୍ ବୟସର ଲେଖକ ଲେଖିକାମାନେ ଏହି ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ପାରିବେ ଓ ପୁରସ୍କାରର ପରିମାଣ ପାଞ୍ଚଶହ ଟଙ୍କାରୁ ଏକହଜାର ଟଙ୍କାକୁ ବଢାଇ ଦିଆଯିବ !

ଚଳିତ ବର୍ଷ, ଆମେ, ଆମର ସେହି ପ୍ରତିଶ୍ରୁତି ରଖିବା ଦିଗରେ ଯଥାସାଧ୍ୟ ଉଦ୍ୟମ କରିଛୁ ! ଫଳତଃ, ପ୍ରତିଯୋଗିତାରେ ଅଂଶଗ୍ରହଣକାରୀଙ୍କ ସଂଖ୍ୟା ଏଥର ଆଶାଜନକ ଭାବରେ ବଢିଛି । ସୃଜନଶୀଳ କଥାଶିଳ୍ପୀ ଶ୍ରୀ ରବି ପଟ୍ଟନାୟକ ଓ କଥାସାହିତ୍ୟର ସ୍ୱନାମଧନ୍ୟ ସମୀକ୍ଷକ ଶ୍ରୀ ସୌରୀନ୍ଦ୍ର ବାରିକଙ୍କ ଦ୍ୱାରା ସେଗୁଡ଼ିକର ବିଗ୍ଭର କରାଯାଇଛି ଓ ଶ୍ରେଷ୍ଠ ପ୍ରତିଯୋଗୀଙ୍କୁ ଆଜିର ଉତ୍ସବରେ ପୁରସ୍କୃତ କରାଯିବ । କିନ୍ତୁ ତା' ପୂର୍ବରୁ ଏହି ପ୍ରତିଯୋଗିତାର ଉଦ୍ଦେଶ୍ୟ ସଂପର୍କରେ କିଛି କହି ରଖିବା ଉଚିତ୍ ହେବ ।

ଚଳିତ ଦଶକରେ ଓଡିଆ ସାହିତ୍ୟ କ୍ଷେତ୍ରରେ ଏକ ଅହେତୁକ ଭଟ୍ଟା ଆସିଛି ବୋଲି ପ୍ରାୟ ସମସ୍ତେ ଏକମତ ହେବେ । ଏହାର ପୂର୍ବ ଦଶକରେ ସାହିତ୍ୟ ଯେଉଁ ସ୍ତରରେ ଥିଲା, ସେ ଦିନ ପୁଣି କେବେ ଆଉ ଆସିବ ବୋଲି କଳ୍ପନା କରି ହେଉନାହିଁ । ଏହାର ଏକାଧିକ କାରଣ ରହିଛି । ସେତେବେଳେ ପ୍ରବୀଣ ଓ ନବୀନ ସାହିତ୍ୟିକମାନଙ୍କର ଉଦ୍ୟମ ଅବ୍ୟାହତ ଥିଲା ଏବଂ ସେଗୁଡ଼ିକର ପ୍ରକାଶନ ଦିଗରେ କେତେକ ଏକନିଷ୍ଠ ସଂପାଦକ କାର୍ଯ୍ୟରତ ଥିଲେ । ପ୍ରବୀଣ ଓ ନବୀନ ସାହିତ୍ୟିକ ମାନେ ପରସ୍ପର ଭିତରେ ଭାବ ଆଦାନ-ପ୍ରଦାନ କରି ପାରୁଥିଲେ, ଅର୍ଥାତ୍ ଏ ଦିଗରେ ଉଭୟ ପକ୍ଷରୁ ଯଥୋଚିତ ଚେଷ୍ଟା ରହିଥିଲା । ଫଳତଃ, ସପ୍ତମ ଦଶକରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସୁବର୍ଣ୍ଣ ଯୁଗଟିର ମୁହଁ ସ୍ପଷ୍ଟ ହୋଇ ଆସୁଥିଲା !

କେବଳ ଓଡ଼ିଶାକୁ ନୁହେଁ, ସାରା ଭାରତବର୍ଷକୁ ଅଷ୍ଟମ ଦଶକ ଆସିଲା ଟେଲିଭିଜନ ସହିତ । ଟେଲିଭିଜନର ବ୍ୟାପକ ପ୍ରସାର ଓ କମ୍ପ୍ୟୁଟର ଶିକ୍ଷା ପ୍ରଚଳନ ଯୋଗୁ ଆମ ସାମାଜିକ ଜୀବନରେ ହଠାତ୍ ଅତ୍ୟାଧୁନିକତାର ସୂତ୍ରପାତ ହେଲା, ଯାହାକୁ ସହଜରେ ଗ୍ରହଣ କରି ନେବାର ସମୟ ବୋଧହୁଏ ଆମମାନଙ୍କ ପାଇଁ ଆସିନଥିଲା । ତଥାପି ଆମେ ସେହି ପରିବର୍ତ୍ତନ ସହିତ ପାଦ ମିଳାଇ ଚାଲିବା ପାଇଁ ଚେଷ୍ଟା କଲେ । ପରିଣାମ କଥା ଚିନ୍ତା କରିବାକୁ ଆମର ସମୟ ନଥିଲା । ଫଳରେ, ଟେଲିଭିଜନଟିଏ କିଣିଦେଲେ କାମ ସରିଗଲାନାହିଁ, ବରଂ ଟେଲିଭିଜନ୍‌ରେ ଦେଖୁଥିବା ଦୁନିଆ ସହିତ ଆମ ନିଜ ଦୁନିଆର ସାମଞ୍ଜସ୍ୟ ଆଣିବାକୁ ଆଶା ବାନ୍ଧିଲେ । ପିଲାମାନେ ବହିର ଗୀତ ଅପେକ୍ଷା 'ଚିତ୍ରହାର'କୁ ଅଧିକ ପସନ୍ଦ କଲେ । ବାପା ମା' ମାନେ ପିଲାମାନଙ୍କୁ କମ୍ପ୍ୟୁଟର୍ ପାଠ ପଢ଼ିବା ପାଇଁ ଅଧିକ ଉତ୍ସାହ ଦେଲେ । କ୍ରମଶଃ ଆରମ୍ଭ ହେଲା ଅବକ୍ଷୟ ।

ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ସାହିତ୍ୟ ମାଧ୍ୟମରେ ସମାଜକୁ ସୁସଂଗଠିତ କରିବା ପାଇଁ, ମୁଖ୍ୟତଃ ବାର୍ଦ୍ଧକ୍ୟ ଜନିତ କାରଣରୁ ପ୍ରବୀଣ ସାହିତ୍ୟିକମାନଙ୍କ ସ୍ପଷ୍ଟ ସ୍ୱର ଆଉ ଶୁଣିବାକୁ ମିଳିଲା ନାହିଁ । ନବୀନମାନଙ୍କ ଅବସ୍ଥା ନକହିଲେ ଭଲ– ସେମାନେ ବି ପରିବର୍ତ୍ତନର ତେଲ କଡ଼େଇ ଭିତରେ ମୁମୂର୍ଷୁ । ଟେଲିଭିଜନ୍‌ର ଚ୍ୟାଲେଞ୍ଜ ଯୋଗୁ ଅହରହ ଦ୍ୱନ୍ଦ୍ୱ ଭିତରେ ଘାରି ହୋଇ ରହିଲେ ସେମାନେ–ଏହି ଦ୍ୱନ୍ଦ୍ୱ ସେମାନଙ୍କ ଲେଖା ଭିତରେ ବାରି ହେଇ ପଡ଼ିଲା !

ତେବେ ସମାଜକୁ ରାହା ଆଣିଦେବ କିଏ ?

ଆଶା ଥିଲା–ଟେଲିଭିଜନ୍ ଓ କମ୍ପ୍ୟୁଟର୍‌ଶିକ୍ଷା ଜନିତ ଅତିଗତିସମ୍ପନ୍ନ ସାମାଜିକ ସ୍ଥିତିର ମୁକାବିଲା କରିବା ପାଇଁ ସାହିତ୍ୟ ଆହୁରି ପ୍ରଚଣ୍ଡ ହେବ । ଲୋକମାନଙ୍କ ହାତ ଧରି ସେମାନଙ୍କୁ ଟେଲିଭିଜନ୍ ଆଗରୁ ଉଠେଇ ନେଇ ଜୀବନ ବଂଚିବାର ନୂଆ ମାର୍ଗ ଦେଖେଇ ଦେବ ।

ସେ ଆଶା କିନ୍ତୁ ଏବେ ଏକ ହତାଶା ।

ଯୁବ ସାହିତ୍ୟିକମାନେ ଏବେ ଜଣେ ଜଣେ ସାହିତ୍ୟିକ ରୂପେ ଖ୍ୟାତି ଅର୍ଜ୍ଜନ କରିବା ହିଁ ନିଜର ଉଦ୍ଦେଶ୍ୟ ରୂପେ ଗ୍ରହଣ କରିଛନ୍ତି ! ଫଳତଃ, ଓଡ଼ିଆ ଭାଷାପ୍ରତି ଅନାଦର ବଢ଼ିଛି । କଥା କଥାକେ ଅନେକେ ବଙ୍ଗଳା ସାହିତ୍ୟର ଉଦାହରଣ ଦେଇ ଓଡ଼ିଆ ସାହିତ୍ୟରେ କିଛି ନହୋଇ ପାରିବାର ଅଯଥା ଗ୍ଲାନିରେ ମୁହଁ ପୋତି ବସିଛନ୍ତି । ଯୁବକମାନେ ନିଜ ନିଜ ଭିତରେ ଓଡ଼ିଆ ସାହିତ୍ୟର ଆଲୋଚନା କଲାବେଳେ, ନିଜ ଭାଷାକୁ, ନିଜ ସାହିତ୍ୟକୁ, ଉପହାସ କରୁଛନ୍ତି ! ଲୋକମାନେ

ସେମାନଙ୍କ ପିଲମାନଙ୍କୁ ଇଂରଜୀ ମିଡିୟମ୍ ସ୍କୁଲ୍‌ରେ ପାଠ ପଢ଼େଇବାକୁ ଅଧିକ ପସନ୍ଦ କରୁଛନ୍ତି ଓ ତାଙ୍କ ପିଲମାନେ ଓଡ଼ିଆ ଭଷା ଜାଣି ନାହାନ୍ତି ବୋଲି ସର୍ବ-ସମକ୍ଷରେ ଗର୍ବ ଅନୁଭବ କରୁଛନ୍ତି ।

ତେବେ ଏ ଦୁର୍ଗତିର ମୁକାବିଲା କରିବା ଦାୟିତ୍ୱ କାହାର ?

ଏପରି ପ୍ରଶ୍ନଟିଏ ପଗ୍ଭରି ଦେଇ ଆମେ ଆମର ଦାୟିତ୍ୱ ସାରିଦେବାକୁ ଗ୍ଭହୁଁନା । ବରଂ ଓଡ଼ିଆ ସାହିତ୍ୟ ସୃଷ୍ଟି ଦିଗରେ ସାମାନ୍ୟତମ ଚେଷ୍ଟା କରୁଥିବା ଅତି ନବୀନ ବ୍ୟକ୍ତିବିଶେଷଙ୍କୁ ଆମ ସାମର୍ଥ୍ୟ ଅନୁଯାୟୀ ପ୍ରୋତ୍ସାହିତ କରିବାକୁ ଗ୍ଭହୁଁଛୁ । "ଅଖିଳମୋହନ-ସ୍ମାରକୀ ସାହିତ୍ୟ-ପୁରସ୍କାର" ଆମର ସେହି ଉଦ୍ଦେଶ୍ୟର ସ୍ୱରୂପ । ଯଦି ତାହା ସାହିତ୍ୟର ସିଡ଼ି ଚଢିବା ପାଇଁ ପ୍ରଥମ ପାହାଚ ହୋଇ ପାରିବ, ତେବେ ତାହା ଅଖିଳ ମୋହନଙ୍କର ଅମର ଆତ୍ମା ପାଇଁ ଆମର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ।

ଆମେ ଯେତିକି ଜାଣୁ, ଅଖିଳମୋହନ କେବଳ ଆମର ପ୍ରାଣ-ପ୍ରତିଷ୍ଠା କରିନଥିଲେ—ବରଂ ନିଜର ଜୀବିକା ଉପାର୍ଜ୍ଜନ ପାଇଁ ଓକିଲତି କରୁଥିବା ସତ୍ତ୍ୱେ ବି ସାହିତ୍ୟ କରିବା ସହିତ ସେ ଏକାଧିକ ଅନୁଷ୍ଠାନ ସହିତ ଓତପ୍ରୋତ ଭବେ ଜଡ଼ିତ ଥିଲେ । ତେବେ ଆଜି ତାଙ୍କର ଜୟନ୍ତୀ ଉତ୍ସବ ପାଳନ କରିବା ପାଇଁ ଆମେ କାହିଁକି ଏକୁଟିଆ ଠିଆ ହୋଇଛୁ ? ରାଜ୍ୟ ସରକାର ଓ ସାହିତ୍ୟ ଏକାଡ଼େମୀର ଏ ଦିଗରେ କ'ଣ କିଛି ଦାୟିତ୍ୱ ନାହିଁ ?

ଆମେ ତ ପ୍ରତି ବର୍ଷ ଜୟନ୍ତୀ ପାଳନ କରିବୁ ହିଁ କରିବୁ । ସେଥିପାଇଁ ଆସନ୍ତା ବର୍ଷ ମାନଙ୍କରେ ଯେଉଁମାନେ ସହଯୋଗ କରିବାକୁ ଆଗେଇ ଆସିବେ, ସେମାନେ ସର୍ବଦା ସ୍ୱାଗତଯୋଗ୍ୟ । କିନ୍ତୁ ଆମର ପ୍ରଶ୍ନ ହେଉଛି, ରାଜ୍ୟ ସରକାର ବା ସାହିତ୍ୟ ଏକାଡ଼େମୀ "ଅଖିଳମୋହନ ଗ୍ରନ୍ଥାବଳୀ"ଟିଏ ପ୍ରକାଶ କରିବାର ଦାୟିତ୍ୱ କାହିଁକି ହାତକୁ ନେବେ ନାହିଁ ?

ଆଶା ଏଠାରେ ଉପସ୍ଥିତ ଥିବା ଆପଣମାନେ ସମସ୍ତେ, ଏହି ପ୍ରସଙ୍ଗରେ ଆପଣମାନଙ୍କର ସୁଚିନ୍ତିତ ପରାମର୍ଶ ଅବଶ୍ୟ ଦେବେ !

ଧନ୍ୟବାଦ !

କପିଳାସ ଭୂୟାଁ
ସମ୍ପାଦକ
କଚ୍ଛପ ନାଟ୍ୟ ଆନ୍ଦୋଳନ ।

●

# ଅଖିଳମୋହନ ଏକ ସତୀର୍ଥ ଓ ସ୍ମୃତି

'କଳ୍ପ ନାଟ୍ୟ ଆନ୍ଦୋଳନ' ପକ୍ଷରୁ ଆୟୋଜିତ ୬୦ତମ ଅଖିଳମୋହନ ଜୟନ୍ତୀ ଉତ୍ସବରେ ଯୋଗ ଦେଇଥିବା ବକ୍ତା ଓ ଅତିଥି ମାନଙ୍କ ଅଭିଭାଷଣର ଅଂଶବିଶେଷ ।

**ଚନ୍ଦ୍ରଶେଖର ରଥ :**

ଯେ ମଂଚ ଉପରେ ଥିଲେ ମଂଚ ଶୋଭା ପାଉଥାନ୍ତା, ଯେ କାଚବାଡ଼ ପଛପଟୁ କେବଳ ଗ୍ରହିଁ ରହିଛନ୍ତି, ଆମର କୌଣସି ପ୍ରଶ୍ନର ଉତ୍ତର ଦେଉନାହାନ୍ତି, ଯେ ଆମକୁ ଗୋଟେ ବିଛେଦ ଦୁଃଖ ଦେଇଛନ୍ତି—ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ମୁଁ ସମ୍ମାନ ଜଣାଉଛି—

ସମ୍ମାନ ଜଣାଉଛି ବି ଆପଣମାନଙ୍କୁ ଯେଉଁମାନେ ଅଖିଳବାବୁଙ୍କୁ ଭଲ-ପାଆନ୍ତି ଓ ସେଥିପାଇଁ ହିଁ ଏ ସଭରେ ଉପସ୍ଥିତ ଅଛନ୍ତି ।

ଭଲ ପାଇଲେ ପ୍ରଥମେ ଦବାକୁ ହୁଏ—ଏବଂ ଦବାପାଇଁ ଯଦି ଅବକାଶ ନମିଳେ ମନରେ ଦୁଃଖ ରହିଯାଏ । ମୁଁ ଯାହାଙ୍କୁ ଭଲ ପାଇଛି ତାଙ୍କୁ କିଛି ଦବାର ସୁଯୋଗ ପାଇନଥିଲି—ବୁଲୁ (ଅଖିଳବାବୁଙ୍କ ବଡ଼ପୁଅ) ଯେତେବେଳେ ମୋ ପାଖରେ ପହଞ୍ଚିଲେ, ମୁଁ ତାଙ୍କୁ କହିଥିଲି—ତୁମକୁ ନଦେବା ପାଇଁ ମୋର କିଛି ନାହିଁ । କାରଣ ଏ ବାକ୍ୟଟି ଯାହାଙ୍କ ପାଇଁ ମୁଁ ଦିନେ କହିଥାନ୍ତି ଓ କହି ଖୁସି ହେଇଥାନ୍ତି, ସେ ଆଜି ଆମ ଗହଣରେ ନାହାନ୍ତି ।

ଅଖିଳବାବୁ ଆଜି ନାହାନ୍ତି—ଏ ଅନୁଭବଟି କିପରି ? ଯେମିତିକି, ଶୀତ ରାତିରେ କୌଣସି ଦୂର ଗାଁକୁ ବସରେ ଦି'ଟିକିଆ ସିଟ୍‌ରେ ବସି ଆପଣ ଯାଉଥିବେ......ଏବଂ ବସ୍‌ର ସ୍ୱର ଜଣା ଯାଉଥିବ ଯେପରି କୌଣସି ସ୍ୱପ୍ନ ରାଇଜର ସ୍ୱର ପରି—ସେତିକିବେଳେ, ଆଖି ପଡ଼ି ଆସୁଥିଲାବେଳେ; ଆପଣ ଅନୁଭବ କରିବେ ଯେ, ଆପଣଙ୍କ ପାଖ ସିଟ୍‌ରେ ଯେ ବସିଥିଲେ ସେ ଓହ୍ଲେଇ ଯାଇଛନ୍ତି ଏବଂ ବସ୍‌ଟି ଛାଡ଼ିବା ପୂର୍ବରୁ ଆଉ ଆସୁନାହାନ୍ତି । ଆପଣଙ୍କୁ ନେଇ ବସ୍ ଗଲି ଯାଉଛି ଏବଂ ସେ ସିଟ୍‌ଟି ଖାଲି ପଡ଼ିଛି । ଆପଣ ହାତ ମାରିଲେ ଉଷ୍ମତା ଲାଗୁଛି, କିନ୍ତୁ ସେ ବ୍ୟକ୍ତି ଆଉ ନାହାନ୍ତି—ସେଇଭଳି ଗୋଟେ ଅନୁଭବ ଆସୁଛି ଆଜି ଅଖିଳବାବୁଙ୍କ ଅବର୍ତ୍ତମାନରେ ।

ଅଖିଳବାବୁଙ୍କୁ ମୁଁ ଜାଣିଲି ବହୁ ବିଳମ୍ବରେ । ମୋର ସ୍ପଷ୍ଟ ମନେ ଅଛି ଯେତେବେଳେ ମୁଁ ୧୯୬୦ରେ ଭୁବନେଶ୍ୱର ଆସିଲି ଅଖିଳମୋହନ ପଟ୍ଟନାୟକଙ୍କ ସହିତ ମୋର ଦେଖାହେଲା । ମନେହେଲା, ସେ ଜଣେ ଖୁବ୍ ଉଚ୍ଚ ମଣିଷ । ତାଙ୍କ ପାଖରେ ଏମିତି ଠିଆ ହେଲେ ହୁଏତ କାନ୍ଧକୁ କାନ୍ଧ ମିଳେ—ହୁଏତ ସେ ମୋର ସମତୁଲ ହେବେ ବା ଟିକିଏ କମ୍—କିନ୍ତୁ ହଠାତ୍ ଦେଖିଦେଲେ ଲାଗେ ସେ ଅତି ଉଚ୍ଚ—ସେଇଟା ବୋଧେ ସେ ବ୍ୟକ୍ତି ନୁହଁ, ତା'ର ବ୍ୟକ୍ତିତ୍ୱ ! ଏବଂ ସେମିତି ଉଚ୍ଚ ମଣିଷ ଦେଖିବାର ସୁଯୋଗ ଜୀବନରେ ବାସ୍ତବିକ୍ ଖୁବ୍ କମ୍ ମିଳେ !

ତାଙ୍କ ଘରକୁ ମୁଁ ଅନେକ ଥର ଯାଇଛି । ତାଙ୍କର ବହୁତ ଗୁଡ଼ିଏ ଅଭ୍ୟାସ ସହିତ ମୋର ଅଭ୍ୟାସ ଆଦୌ ପଡ଼େନାହିଁ । ଆବିଷ୍କାର କଲି ଖୁବ୍ ବିଳମ୍ବରେ ସେ ଉଠନ୍ତି ଏବଂ ମୁଁ ଖୁବ ଶୀଘ୍ର ଉଠେ—ଏବଂ ସେଇଟା ଅଖିଳମୋହନ ପଟ୍ଟନାୟକଙ୍କ ଭାଷାରେ ଏକ ଅପରାଧ । ବୋଧେ ସେ ଓକିଲ ବୋଲି ପ୍ରଥମେ ଅପରାଧ କଥା ଚିନ୍ତା କରନ୍ତି । ତାଙ୍କ ଘରେ ବସିଲେ କୌଣସି ପ୍ରକାରର ଔପଚାରିକତା ନଥାଏ । ଖଣ୍ଡିଏ ଲୁଙ୍ଗି ଓ ଗଞ୍ଜି ପିନ୍ଧି ସେ ଆମ ଆଗରେ ବସନ୍ତି ଓ କଥା କଥାକେ ଟହଟହ ହସନ୍ତି । ଏଭଳି ହସିବା ବ୍ୟକ୍ତି ମଧ୍ୟ ମୁଁ ଦେଖିନାହିଁ । ବିଶ୍ୱାସ କରନ୍ତୁ, ହସିବା ସମୟରେ ସେ ହା' ହା' କରି ହସନ୍ତି, ଯେତେବେଳେ ତାଙ୍କର ବତିଶିଟି ଦାନ୍ତ ଦେଖାଯାଏ । ଜଣାପଡ଼େ ଯେମିତିକି ତାଙ୍କ ହୃଦୟରୁ ଆସି ତାଙ୍କ ମୁହଁ ଦ୍ୱାର ପାଖେ ପହଞ୍ଚିଯାଇ ସେ କହୁଛନ୍ତି—ଦେଖ ମୋ ପାଖରେ ଆଉ ଲୁଚେଇବାର କିଛି ନାହିଁ—ମୁଁ ସବୁ ହସରେ ପ୍ରକାଶ କରିଦେଲି ! ଏତେ ନିର୍ମଳ ସେ ହସ, ଯେମିତି ନାଭିକେନ୍ଦ୍ରରୁ ନାଦ ରୂପେ ଆସୁଛି !

ତା'ପରେ ତାଙ୍କ ସମ୍ପର୍କରେ ଆସିଲା ପରେ ଆମେ କେତେଜଣ ଜଣ-ଜଣଙ୍କ ଘରେ ବସିଲୁ—ସାହିତ୍ୟ ବିଷୟରେ ଆଲୋଚନା କଲୁ । କ୍ରମେ ତାହା ଏକ ରୂପ ନେଲା—ଯାହାକୁ ଆପଣମାନେ ଆଜିକାଲି "ଲେଖକ ସାନ୍ନିଧ୍ୟ" ରୂପେ ଚିହ୍ନିଛନ୍ତି ।

ଗୋଟିଏ ଦିନର ଘଟଣା—କୌଣସି ଏକ ସାହିତ୍ୟ ଆଲୋଚନାକୁ ଅଖିଳବାବୁ ଆସିଥାନ୍ତି । ମୁଁ ବି ଯାଇଥାଏ । ଖାଇବା ପିଇବାର ବନ୍ଦୋବସ୍ତ ହୋଇଥାଏ । ଖାଇଲାବେଳେ ମୁଁ ତାଙ୍କର ବିପରୀତ ପଟେ ବସିଥାଏ । ଜାଣିଶୁଣି ନୁହେଁ, ଦୈବାତ୍ । ଏବଂ ସେଠି କିଛି ପାନୀୟର ବ୍ୟବସ୍ଥା ହୋଇଥାଏ । ମୋ ସକାଶେ ଶୁଦ୍ଧ ଜଳ ଏବଂ ଅଖିଳବାବୁଙ୍କ ପାଇଁ ଅନ୍ୟକିଛି । ଉପସ୍ଥିତ ଥିବା ଅନ୍ୟାନ୍ୟ ସାହିତ୍ୟିକମାନେ କେଜାଣି କାହିଁକି ମୋ ଉପସ୍ଥିତିରେ ଟିକିଏ ଅସ୍ୱସ୍ତି-

ବୋଧ କଲେ ଏବଂ ତାଙ୍କ ଭିତରୁ କେତେଜଣ ଉଠି ମଧ୍ୟ ଗ୍ଲଲିଗଲେ—କିନ୍ତୁ ଜଣେ ମାତ୍ର ଅଖିଳମୋହନ ପଟ୍ଟନାୟକ ମତେ ସିଧାସଳଖ ଗ୍ଲହିଁ ଅଳ୍ପ ଅଳ୍ପ ହସୁଥିଲେ ଓ ଶେଷକୁ ଗୋଟିଏ ବାକ୍ୟ କହିଲେ, ଯାହାକୁ ମୁଁ ଆଦୌ ଭୁଲି ପାରିବି ନାହିଁ । ସେହି ବାକ୍ୟଟି ହେଉଛି– 'ରଥବାବୁ ଆପଣଙ୍କୁ ଦେଖିଲେ ଦୟା ଲଗୁଛି ।'

ଏବଂ ଏତେ ଉଚ୍ଚରୁ ମୋ ପ୍ରତି ଏଭଳି ଏକ ବାକ୍ୟ ପ୍ରୟୋଗ କରିବାର ଦ୍ଵିତୀୟ ବ୍ୟକ୍ତି କେହି ନାହାନ୍ତି । ମତେ ଅନ୍ୟମାନେ ବିଭିନ୍ନ ରୂପରେ ପାଇଛନ୍ତି । କିନ୍ତୁ ଏତେ ଉଚ୍ଚରୁ ମତେ ଦୟା କଲଭଳି ବ୍ୟକ୍ତି ବୋଧେ କେହି ନାହାନ୍ତି—ଯଦି ବା ଥାଆନ୍ତି, ତାଙ୍କ ସହିତ ମୋର ସାକ୍ଷାତ ହୋଇନାହିଁ । ମୁଁ ବି ତାଙ୍କୁ ହସି ହସି ଉତ୍ତର ଦେଇଥିଲି, ଆପଣ ମତେ ଦୟା କରୁଛନ୍ତି ? ମୋର ବି ଆପଣଙ୍କ ପ୍ରତି ଦୟା ଅଛି ।

ମୁଁ ଖାଲି କଥା ଛଳରେ ଏମିତିଆ କହିଦେଲି ସିନା, ସେତେବେଳକୁ ମୁଁ ପରାସ୍ତ ହେଇ ସାରିଥିଲି । କାରଣ ସେ ପ୍ରଥମ ବାକ୍ୟର ଗ୍ଲପ ମୁଁ ଅନୁଭବ କରୁଥିଲି ମୋ ଭିତରେ । ତା'ପରେ ସେ ବୁଝେଇଲେ, ଇଂରାଜୀରେ କହିଲେ– ( ସେ ବଡ ଚମତ୍କାର ଇଂରାଜୀ କହନ୍ତି ! )—'ୟୁ ପ୍ରବେବ୍ଲି ଡୁ ନଟ୍ ନୋ' ହାଉମଚ୍ ୟୁ ହାଭ୍ ମିସଡ୍ ଇନ୍ ୟୋର ଲଇଫ୍ ।'

ମୁଁ ସେତେବେଳକୁ ଟିକିଏ ଆତ୍ମସ୍ଥ ହେଲିଣି । ଉତ୍ତର ଦେଲି—'ୟୁ ଅବ୍‌ଭିୟସ୍‌ଲି ଡୁ ନଟ୍ ନୋ' ହାଓ ମଚ୍ ଆଇ ହ୍ୟାଭ୍ ଗେନ୍‌ଡ୍ ।'

ଏମିତି ଆମର କଥା ଗ୍ଲଲିଥାଏ—ଅନ୍ୟମାନେ ତାହାକୁ ଉପଭୋଗ କରୁଥାନ୍ତି; ଯେତେବେଳେ ଆଲୋଚନା ଟିକିଏ ଗମ୍ଭୀର ହୋଇଥିଲା, ସେ କହିଥିଲେ—ପାପ କୌଣସି ଆଚରଣରେ ନଥାଏ । ପାପ ବୋଧରେ ହିଁ ଥାଏ । ଯଦି କୌଣସି କାର୍ଯ୍ୟ କଲବେଳେ ମୋର ପାପବୋଧ ଆସି ଯାଇଛି, ତା'ହେଲେ ମୁଁ ପାପରେ ଭାଗୀ ହେଲି ।

ମୁଁ ଏହାକୁ ସମର୍ଥନ କଲି । ଯଦି କୌଣସି କାର୍ଯ୍ୟ କଲବେଳେ ମନ ଭିତରେ ପାପବୋଧ ଘାରୁଛି, ଆଉ ଜଣଙ୍କୁ ଦେଖିଲେ ମୁଁ ଲୁଚି ଯିବାକୁ ଗ୍ଲହୁଁଛି ତେବେ ତାହା ମୋ ସକାଶେ ଏକ ଅପକର୍ମ । ଯଦି ମୁଁ ତା'କୁ ଅତି ସ୍ୱାଭାବିକ ଓ ସ୍ୱଚ୍ଛନ୍ଦ ଭାବରେ କରି ପାରୁଛି—ମୋ ମନ ଭିତରେ କୌଣସି ପ୍ରକାରର ବୈକଲ୍ୟ ନାହିଁ, ତା'ହେଲେ ତାହା ପାପ ନୁହେଁ, ଅସତ୍ କର୍ମ ନୁହେଁ । ଏହା ସେ ନିଜ ଆଚରଣରେ ପ୍ରମାଣ କରିଦେଲେ ।

ସେ ମୋ ମନରେ ରେଖାପାତ କରିଛନ୍ତି । ମତେ ଲଗୁଛି ଓଡିଆ ସାହିତ୍ୟରେ ସେ ହେଉଛନ୍ତି ଅଭିଜାତ ପୁରୁଷ । ସେ କହିବାର ମୁଁ ଶୁଣିଛି—ଯାହାର ଆଣ୍ଠୁ ନଇଁ-

ଗଲା, ସେ ବ୍ୟକ୍ତି ହାରିଗଲା ଜାଣ । ଅଖିଳମୋହନ ପଟ୍ଟନାୟକଙ୍କର ଆଣ୍ଠୁ କେବେ ନଇଁ ନାହିଁ ।

ଆମେ କେତେ ଜଣ ସାହିତ୍ୟ-ସର୍ବସ୍ୱ ପୁରୁଷ । କିନ୍ତୁ ଅଖିଳ ମୋହନ ତାହା କଦାପି ନଥିଲେ । ମୋର ମନେହୁଏ, ସେ ଏପରି ଜଣେ ବ୍ୟକ୍ତିତ୍ୱ ଯେ, ସେ ଚାଲିଗଲାବେଳେ, ସମଗ୍ର ପୃଥିବୀକୁ ଲମ୍ବା ଲମ୍ବା ପାହୁଣ୍ଡରେ ଅତିକ୍ରମ କରି ଯାଉଛନ୍ତି ଓ ତାଙ୍କ ପକେଟ୍‌ରୁ ଛୋଟ ଛୋଟ ଥାଳିଆ ଭଳି ସାମ୍ରାଜ୍ୟମାନ ଖସି ପଡୁଛି ।

ସେ ଯେତେ ଯୁଆଡ଼େ ମିଶିଛନ୍ତି । ସମସ୍ତେ ଭାବିଛନ୍ତି ସେ ବୋଧେ ଆମରି ହିଁ କେବଳ । 'କଚ୍ଛପ' ନାଟ୍ୟ ସଂସ୍ଥା ମଧ୍ୟ ଭାବିଛି ଯେ—ସେ ବୋଧହୁଏ ଆମରି ହିଁ କେବଳ । ଆମେ କେତେଜଣ ସାହିତ୍ୟିକ ବି ଭାବିଛୁ ଅଖିଳମୋହନ ଗାଳ୍ପିକ ଛଡ଼ା ଆଉ କିଛି ନୁହଁ । କିନ୍ତୁ ସମସ୍ତଙ୍କୁ ଭ୍ରାନ୍ତ ବୋଲି ପ୍ରମାଣିତ କରି ସେହି ବିଶାଳ ବ୍ୟକ୍ତିତ୍ୱ ଦଣ୍ଡାୟମାନ । କାରଣ ସେ ଅଖିଳ-ମୋହନ ।

**ବଭୂତ ପଟ୍ଟନାୟକ**

ଅଖିଳମୋହନଙ୍କ ଜୟନ୍ତୀ ଉତ୍ସବ ଯୋଗୁ ଆମେ ଏଠାରେ ଏକାଠି ହୋଇଛନ୍ତି । ସେ ଯେ ଚାଲି ଯାଇଛନ୍ତି ସେ କଥା ବିଶ୍ୱାସ କରି ହେଉନାହିଁ । କିନ୍ତୁ ତାଙ୍କ ପରି ଜଣେ ତେଜସ୍ୱୀ ପୁରୁଷ କିପରି ଏତେ ଶୀଘ୍ର ବିଦାୟ ନେଇଗଲେ ? ଏହା ସତ୍ୟ ଯେ ଭଗବାନ ଯାହାଙ୍କୁ ଭଲ ପାଆନ୍ତି, ସେ ତାଙ୍କ ପାଖକୁ ତାକୁ ଶୀଘ୍ର ନେଇ ଯାଆନ୍ତି ।

ଅଖିଳବାବୁଙ୍କ ସହିତ ମୋର ପ୍ରଥମ ସାକ୍ଷାତ, ମୁଁ ଯେତେବେଳେ ନୂଆ କଲେଜକୁ ପାଠ ପଢିବାକୁ ଆସିଲି । ମୋର ମନେ ଅଛି ତାଙ୍କର 'ମନସ୍ତାତ୍ତ୍ୱିକର ଚିଠି' ପଢି,ଯାହା ଝଙ୍କାରରେ ସେତେବେଳେ ବାହାରୁଥିଲା, ମୋର ମନ ତାଙ୍କ ଆଡ଼କୁ ଟାଣି ହୋଇ ଯାଇଥିଲା । ତାଙ୍କର ଅନେକ ଲେଖା ମୁଁ ପଢିଛି—କିନ୍ତୁ ମନସ୍ତାତ୍ତ୍ୱିକର ଚିଠି, ଯାହା 'ଅନାଗତ ଫାଲ୍‌ଗୁନ' ନାମରେ ପରବର୍ତ୍ତୀ କାଳରେ ଛପା ହୋଇଛି, ତା'ର ଆକର୍ଷଣ ଆଜି ସୁଦ୍ଧା ମୋ ମନରେ ଅଛି । କୌଣସି ବିଷୟବସ୍ତୁ ନାହିଁ— କୌଣସି ଘଟଣା ନାହିଁ— ଜଣେ କାଳ୍ପନିକ ପ୍ରେମିକାଙ୍କୁ ନେଇ ଗଳ୍ପ ରଚନା ଶୈଳୀରେ ସେ ଯେଉଁ ଚିଠି ତାଙ୍କୁ ଦେଲେ— ମୋର ଧାରଣା ଓଡ଼ିଆ ସାହିତ୍ୟରେ ଆଜି ପର୍ଯ୍ୟନ୍ତ ସୁଦ୍ଧା ଏପରି ମନମୁଗ୍‌ଧକର ଲେଖା, ଲେଖା ହୋଇନାହିଁ ।

ମୁଁ ଯେତେବେଳେ ପ୍ରଥମେ କଲେଜକୁ ଆସିଥିଲି, ତାଙ୍କ ସାଙ୍ଗରେ ପ୍ରଥମେ ଦେଖାହେଲା— ସେ ଟାଉନ୍ ହଲ୍‌ରେ ଭାଷଣ ଦେଉଥିଲେ । ସମ୍ଭବତଃ ସେ

ସେତେବେଳେ ଥିଲେ ରାଜ୍ୟ ଗଣତାନ୍ତ୍ରିକ ଯୁବକ ସଂଘର ସଭାପତି ଏବଂ ତାଙ୍କର ଯେଉଁ ପ୍ରାଞ୍ଜଳ ଭାଷଣ, ଭାଷଣର ଯେଉଁ ଭାଷା, ମୁଁ ଆଜି ପର୍ଯ୍ୟନ୍ତ ସୁଦ୍ଧା ତା'କୁ ଭୁଲି ପାରିନି । ତାଙ୍କ ବକ୍ତବ୍ୟରେ କୌଣସି ସଂଶୟ ନଥିଲା । ସେ ଯାହା କହିବାକୁ ଚାହାଁନ୍ତି ତାକୁ ଏପରି ପ୍ରାଞ୍ଜଳ ଭାଷାରେ କହୁଥିଲେ ଯେ ଆମପରି ଯୁବକମାନଙ୍କୁ ମଧ୍ୟ ମନ୍ତ୍ରମୁଗ୍ଧ କରି ଦେଉଥିଲେ ।

ତା' ପରେ, ଘଟଣାକ୍ରମେ ତାଙ୍କ ସହିତ ମୋର ଅନେକ ଥର ଦେଖା ସାକ୍ଷାତ ହୋଇଛି– ତାଙ୍କୁ ମୁଁ ଦୂରରୁ ଦେଖିଛି, ପାଖରୁ ଦେଖିଛି– ତାଙ୍କ ସ୍ନେହ ଶ୍ରଦ୍ଧା ପାଇଛି, ତା'ଙ୍କଠୁ ଗାଳି ଶୁଣିଛି– ଗାଳି ବି ଦେଇଛି– କିନ୍ତୁ ତାଙ୍କର ଯେଉଁ ବିରାଟ ବ୍ୟକ୍ତିତ୍ୱ, ଯେଉଁ ତେଜସ୍ୱୀ ବ୍ୟକ୍ତିତ୍ୱ......... ତା' ପାଖରେ ମୁଁ ବାରମ୍ବାର ନତ ହୋଇ ଯାଇଛି ।

ଛୋଟିଆ ଉଦାହରଣଟିଏ ଦେଉଛି–

ମୋର ସ୍ପଷ୍ଟ ମନେ ଅଛି, ସେଣ୍ଟ୍ରାଲ ସାହିତ୍ୟ ଏକାଡେମୀ ତରଫରୁ ପ୍ରେମଚନ୍ଦଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଗୋଟିଏ ସେମିନାର୍ ଆୟୋଜିତ ହୋଇ-ଥାଏ କଲିକତାରେ । ସେଥିରେ ଓଡ଼ିଆ କ୍ଷୁଦ୍ରଗଳ୍ପରେ ବାସ୍ତବତାବାଦକୁ ନେଇ ଗୋଟିଏ ଇଂରେଜୀ ପ୍ରବନ୍ଧ ଲେଖି ସେଠି ଉପସ୍ଥାପନ କରିବା ପାଇଁ ମୁଁ ଯାଇଥାଏ । ମୁଁ ଯେତେବେଳେ ପହଞ୍ଚିଲି କଲିକତାରେ, ଅଖିଳବାବୁ ମତେ ଦେଖି ପଚାରିଲେ– କିହୋ, ତମେ କୁଆଡେ ଆସିଛ ? ମୁଁ ମୋ କଥା କହିଲାରୁ ସେ କହିଲେ– ଦେଖିଲ, ଭାଗ୍ୟର କି ବିଡ଼ମ୍ବନା ! ତୁମେ ଭଲ ଗଳ୍ପ ଲେଖନାହିଁ ତୁମକୁ କ୍ଷୁଦ୍ରଗଳ୍ପ ଉପରେ ଓ ମୁଁ ଉପନ୍ୟାସ ଆଦୌ ଲେଖିନି ମତେ ଉପନ୍ୟାସ ଉପରେ କୁହା ଯାଇଛି କହିବାପାଇଁ । ତୁମେ ରହୁଛ କେଉଁଠି ? ମୁଁ ଠିକଣା କହିବାରୁ ସେ କହିଲେ ଯେ ସେଦିନ ରାତିଟି ସେ ମୋ ସହିତ ରହିବେ ଓ ଉପନ୍ୟାସ ସଂପର୍କରେ ମୋ ଠାରୁ କିଛି ଶୁଣିବେ । ହୋଟେଲରେ ପହଞ୍ଚି ପ୍ରଥମେ ରୁମ ବୟକୁ ଡାକି ସାରା ରାତି ପାଇଁ କୋଲଡ୍‌ଡ୍ରିଙ୍କ୍ ଓ ଚାହା ବରାଦ କରିଦେଲେ ।

ମୁଁ କିନ୍ତୁ ବଡ଼ ଚିନ୍ତାରେ ପଡ଼ିଲି । ସାରା ରାତିଟା କେମିତି କଟିବ (?) ଯେଉଁଥି ପାଇଁ ସାରଗର୍ଭକ କିଛି ମୋ ନିକଟରେ ନାହିଁ ! କିନ୍ତୁ ମୁହୂର୍ତ୍ତକ ମଧ୍ୟରେ ମୋତେ ସେ ଖୁବ୍ ସହଜ କରିଦେଲେ । ଓଡ଼ିଆ ଉପନ୍ୟାସ ଉପରେ ଆଲୋଚନା ହେଲା । ଶେଷକୁ ମୁଁ ଦେଖିଲି, ଯଦିଓ ମୁଁ ଓଡ଼ିଆ ଉପନ୍ୟାସ ଉପରେ ତାଙ୍କୁ ବ୍ରିଫ୍ କରିବାର ଥିଲା, ତଥାପି ବି ଉପନ୍ୟାସ ସମ୍ପର୍କରେ ଥିବା ମୋର ଧାରଣାକୁ ସେ ସମ୍ପୂର୍ଣ୍ଣ ବଦଳାଇ ଦେଲେ ।

ରାତି ସେତେବେଳକୁ ବାରଟା ଖଣ୍ଡେ ବାଜିଲାଣି–ମୁଁ ପଚାରିଲି, ଆପଣତ ଏତେ କଥା ଜାଣନ୍ତି, ମତେ କାହିଁକି ଡାକିଥିଲେ ? ସେ କହିଲେ, ମୋର ପାନୀୟର ଷ୍ଟକ କମ୍ ଅଛି । ଆଉ ରୁମ୍‌ରେ ଜଣେ ସାମ୍ବାଦିକ ଅଛନ୍ତି, ଯେ କି ତୁମେ ଥିବାରୁ ଏଠାକୁ ଆସି ପାରୁନାହାନ୍ତି–ତୁମେ ଏଠୁ ଚାଲିଗଲେ ସେ ଆସି ପହଞ୍ଚିବେ ଓ ମୋର ଅବଶିଷ୍ଟ ପାନୀୟତକ ନିଃଶେଷ କରିଦେବେ–କିନ୍ତୁ ମୁଁ ତାହା ନିଃଶେଷ ହେବା ଚାହୁଁନାହିଁ ।

ତା' ଆରଦିନ ସକାଳୁ କହିଲେ, ଚାଲ, ତୁମକୁ ଆଜି ଗୋଟେ ବଢିଆ ଖାନା ଖୁଆଇବି । ଦୋସା ଖୁଆଇବି, ଫାଷ୍ଟକ୍ଲାସ୍ ଦୋସା ! କୋଉଠି ମିଳିବ କହି ପାରିବ ? ମୁଁ ମନାକଲି । ଉତ୍କଳ ଭବନରୁ ଚାଲି ଚାଲି ଚୌରଙ୍ଗୀର ସେ ଦୋକାନରେ ଆମେ ପହଞ୍ଚିଲୁ । ସ୍ପେଶାଲ୍ ଦୋସାର ବରାଦ ଦିଆଗଲା ।

ତା' ଆରଦିନ ସେମିନାର୍‌ରେ ସେ ତାଙ୍କ ପେପର ପଢିଲେ ନାହିଁ–ପେପର୍ ସେମିତି ପଡି ରହିଲା । ସେ ଇଂରେଜୀରେ ପଇଁଚାଳିଶି ମିନିଟ୍ ପର୍ଯ୍ୟନ୍ତ ଅନର୍ଗଳ ଭାଷଣ ଦେଲେ–ସେଥିରେ ଓଡ଼ିଆ ସାହିତ୍ୟର କିଛି ନାହିଁ । ସେ ବିଶ୍ୱସାହିତ୍ୟରୁ, ଆରିଷ୍ଟୋଟ୍‌ଲଙ୍କ ଠାରୁ, କାମ୍ୟୁ, କାଫ୍‌କା ପର୍ଯ୍ୟନ୍ତ କହି ଚାଲିଲେ । ନିୟମ ଅନୁସାରେ ଜଣେ ନିଜ ବକ୍ତବ୍ୟ ଦେଇ ସାରିବା ପରେ, ଯାହାର ଯାହା ସନ୍ଦେହ ରହିବ ସେ ତାହା ପ୍ରଶ୍ନ କରିବ । କିନ୍ତୁ ଅଖିଳମୋହନଙ୍କ ଭାଷଣ ପରେ ସମସ୍ତେ ଚୁପ୍ !

ସେ ଖୁବ୍ ବେଶୀ ଲେଖୁନଥିଲେ–କିନ୍ତୁ ଓଡ଼ିଆ ସାହିତ୍ୟର ଗଦ୍ୟକୁ ସେ ଯେଉଁ ବର୍ଣ୍ଣନା ଆଣି ଦେଇଥିଲେ ତା'ର କୌଣସି ତୁଳନା ନାହିଁ । ମୋର ଅନେକ ସମୟରେ ମନେ ହୋଇଛି, ସୁରେନ୍ଦ୍ର ମହାନ୍ତି ଓ ଅଖିଳମୋହନଙ୍କ ଭାଷାରେ ଅନେକ ସାମଞ୍ଜସ୍ୟ ରହିଛି । କିନ୍ତୁ ସୁରେନ୍ଦ୍ର ମହାନ୍ତିଙ୍କ ସାହିତ୍ୟରେ ବାସ୍ତବତା ନାଆଁରେ ଅନେକ କିଛି ଥାଏ ଯାହାକୁ ପରିହାର କରିଛନ୍ତି ଅଖିଳମୋହନ ପଟ୍ଟନାୟକ ।

**ଅବନୀ କୁମାର ବରାଳ :**

ଅଖିଳମୋହନ ବଞ୍ଚିଥିଲେ ୬୦ ବର୍ଷ ହୋଇଥାନ୍ତା ! ମୋତେ ଏଠାକୁ; ସାହିତ୍ୟ ନୁହେଁ, ଅଖିଳମୋହନଙ୍କର ନାଟକ ଓ ରଙ୍ଗମଞ୍ଚ ସହିତ ସମ୍ପର୍କକୁ ନେଇ ମୋ ଅନୁଭୂତି କହିବାକୁ 'କଚ୍ଛପ ନାଟ୍ୟ ଆନ୍ଦୋଳନ'ର ସଭାପତି ଓ ସମ୍ପାଦକ ଡାକିଛନ୍ତି । ଯଥାର୍ଥରେ ଅଖିଳମୋହନ ଏକ ବିଚିତ୍ର ବ୍ୟକ୍ତିତ୍ୱ–ଏଇଥି ପାଇଁ ଯେ, ଯେଉଁଥିରୁ ନିସୃତ 'କଚ୍ଛପ' ପରି ନାଆଁ । ତାଙ୍କ ବ୍ୟବସାୟିକ ସଂସ୍ଥାର ନାଆଁ ବି ଥିଲା ଏକାପରି–'କୁଇକ୍ କ୍ୟାମେଲ୍' । ଆଉ ମୁଁ ମୋ ନିଜ ଆଖିରେ ଦେଖିଛି ତାଙ୍କୁ ଟ୍ରକ୍ ଚଲେଇ ଯିବାର, ରାତିରେ ଜୁଆ ଖେଳି ୨୧ ହଜାର ଟଙ୍କା ହାରିବାର......

ଅଖିଳମୋହନଙ୍କ ବକ୍ତବ୍ୟର ଏକ ଅଂଶ ଥିଲା, ଯାହା ମୁଁ ଏଠାରେ ଶୁଣିଲି—ଲେଖକର ସମାଜ ପ୍ରତି ଅଙ୍ଗୀକାର ହେଉଛି, ମଣିଷ ଆଣ୍ଠୁ ଭାଙ୍ଗି ଛିଡ଼ା ହେବନାହିଁ । ଏକଥା ସାହିତ୍ୟ ଭିତରେ ଯିଏ ସ୍ପଷ୍ଟ ଭାବେ ନକହି ପାରିଲା— ତାର ଲେଖା ଲେଖା ନୁହେଁ ।

ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ସାହିତ୍ୟ ଯଦି ସମାଜକୁ ସାଥିରେ ନେଇ-ଯାଏ, ତେବେ ନାଟକ ତା'ର ଏକ ବଡ଼ ମାଧ୍ୟମ, ଯାହା ଜରିଆରେ ଏକଥା କରିବା ସମ୍ଭବ । ତେଣୁ, ବ୍ୟବସାୟିକ ରଙ୍ଗମଞ୍ଚରେ ଯେଉଁଠି କଳାକାରମାନେ ପ୍ରତ୍ୟେକ ନିଜ ମୁହଁରେ ରଙ୍ଗବୋଳି ଅଭିନୟ କରନ୍ତି ସେଠି ଯଦି ଆମେ ତା'ର ଆଙ୍ଗିକକୁ ବଦଳାଇ ନୂଆ ମୋଡ଼ ଦେଇପାରୁ ତେବେ ତାହା ଏକ ଅଭିନବ ଉପାୟ ହେବ । ଏବଂ ସେଇଥିପାଇଁ ହିଁ ଦୀର୍ଘ ପ୍ରାୟ ଏକ ଦଶନ୍ଧି ସେ ଜନତା ରଙ୍ଗମଞ୍ଚ ସହିତ ସମ୍ପୃକ୍ତ ଥିଲେ ।

ଜୀବନର ଏକ ଦଶନ୍ଧି ସନ୍ଧ୍ୟା ଛ'ଟାରୁ ରାତି ବାରଟା ପର୍ଯ୍ୟନ୍ତ ସେ ତାଙ୍କର ସାହିତ୍ୟ ଛାଡ଼ି, ବ୍ୟବସାୟ ଛାଡ଼ି, ପାନୀୟ ଛାଡ଼ି ଆସି ସହଯୋଗ କରିଥିଲେ, ନାଟ୍ୟ ଆନ୍ଦୋଳନ କ୍ଷେତ୍ରରେ, ଏ କ'ଣ କିଛି କମ୍ କଥା !!!

**ଅମିତାଭ ବାଗଚୀ :**

ଯିଏ ସ୍ୱାଧୀନତାକୁ ସମ୍ମାନ ଦେଇନାହିଁ ସେ ଓକିଲାତି କରିବା ଉଚିତ୍ ନୁହେଁ । ଅଖିଳମୋହନ ସେଥିପାଇଁ କହୁଥିଲେ—ଜଣେ ଓକିଲ ହିସାବରେ ତମର ଯଦି Liberty ଓ Freedom ବିଷୟରେ କନ୍‌ଭିକ୍‌ସନ୍ ନାହିଁ ତମେ ଆର୍‌ଗ୍ୟୁ କରି ପାରିବ ନାହିଁ ।

ତାଙ୍କର ଉତ୍ତର-ବୟସରେ ସେ ବାହାରକୁ ଓକିଲାତି କରିବାକୁ ଯିବାପାଇଁ ନାପସନ୍ଦ କରୁଥିଲେ ଯଦିଓ ସେ ଭାରତବର୍ଷର ବହୁ ଜାଗାକୁ ଓକିଲାତି କରିବାକୁ ଯାଇଛନ୍ତି—ହୁଏତ ଏପରି କୌଣସି ରାଜ୍ୟ ନଥିବ ଯେଉଁଠାକୁ ସେ ନଯାଇଛନ୍ତି । ଯଦିଓ ତାଙ୍କର ଓକିଲାତିର ବେସ୍ ଥିଲା ଭୁବନେଶ୍ୱର, ତଥାପି ବି କଟକର ଯେ କୌଣସି ଅତି ଭଲ ଓକିଲଙ୍କଠାରୁ ମଧ୍ୟ ସେ ବେଶୀ ଓଡ଼ିଶା ବାହାରକୁ ଯାଇଛନ୍ତି ଓକିଲାତି କରିବାକୁ । କିନ୍ତୁ ଶେଷ ବେଳକୁ ସେ ବହୁତ କ୍ଳାନ୍ତ ଅନୁଭବ କରୁଥିଲେ ଓ ତାଙ୍କର ପ୍ରାଏରିଟି ସବୁ ଅଲଗା ହେଇ ଆସୁଥିଲା । ସେ ଓକିଲାତିକୁ ବ୍ୟବସାୟ ହିସାବରେ ନଦେଖି ଆଉ ଫାଷ୍ଟ ପ୍ରାଏରିଟି ନଦେବା ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହେଉଥିଲେ । ତାଙ୍କ ମୃତ୍ୟୁର ୫/୬ ବର୍ଷ ପୂର୍ବରୁ ତାଙ୍କର ଏ ପ୍ରକାରର ମାନସିକ ଅବସ୍ଥା ଥିଲା । କିନ୍ତୁ......... ।

ସେ ବାରମ୍ବାର କହୁଥିଲେ, ଯେ ବାବୁ, ତମେ ତମ ଜୀବନର ମାନ ନିଜେ ନିର୍ଦ୍ଧାରଣ କରିବ । ଏବଂ ସେ ମାନକୁ କିପରି ବଜାୟ ରଖିବ ବା ସେଠାରେ କିପରି ପହଞ୍ଚି ପାରିବ ସେ ପ୍ରଚେଷ୍ଟା ତମେ କରିବ । ସେଥିପାଇଁ ତମର ଯଦି ସମ୍ବଳ ନାହିଁ ସେ ସମ୍ବଳ ଆହରଣ କର ।

ମୁଁ ତାଙ୍କର ଯେଉଁ ବ୍ୟକ୍ତିତ୍ୱ କଥା କହିଲି—ଏବେ ସେ ଧରଣର ସମୃଦ୍ଧ ଅଭିରୁଚିସଂପନ୍ନ ବ୍ୟକ୍ତିତ୍ୱର ବହୁତ ଆବଶ୍ୟକତା ରହିଛି ଆମ ଏବର ସମାଜରେ । ଯଦି ପୁନର୍ଜନ୍ମ ବୋଲି କିଛି ଥାଏ, ତେବେ ମୁଁ ଭଗବାନଙ୍କୁ କହିବି, ଯେ ତୁରନ୍ତ ସେ ପୁଣିଥରେ ତାଙ୍କୁ ଆମପାଖକୁ ପଠାନ୍ତୁ ।

**ମହାପାତ୍ର ନୀଳମଣି ସାହୁ :**

ଅଖିଳ ବାବୁ ମୋର ବାଲ୍ୟ ଓ ସାହିତ୍ୟିକ ବନ୍ଧୁ । ଆମ ଉଭୟଙ୍କ ଜୀବନ ବହୁ ବିନ୍ଦୁରେ ଏକତ୍ରିତ ହୋଇଛି ।

ମୁଁ ଯଦି ତାଙ୍କ ବିଷୟରେ କହିବି ତେବେ ତାହା ଗୋଟିଏ ବହି ହୋଇ ପାରିବ ।

ତେବେ ଗୋଟିଏ କଥା କୁହେ—ମୁଁ ରେଭେନ୍‌ସା କଲେଜରେ ଥାଏ—ମଝିରେ ମଝିରେ ଆସିଲେ ତାଙ୍କ ଘରେ ରହେ । ଗତିସାଗ ନାନାଦି' ଗପସପ ହୁଏ । ଗ୍' ପାନ ହୁଏ, ମଦ୍ୟପାନ ହୁଏ । ଶୋଇଲା ବେଳକୁ ତାଙ୍କ ଖଟତଳେ ଗୋଟିଏ ଘେଗିଣା କୁକୁର ଶୁଏ । ଦିନେ ମୁଁ ଅଖିଳ ଉପରେ ଚିଡ଼ିଲି, କହିଲି—ଅଖିଳ, ଏ କୁକୁରଟାକୁ ଏଠୁ କାଢ଼ତ ? ସେ ମୋ ଉପରେ ଭୀଷଣ ଚିଡ଼ିଗଲେ ଓ କହିଲେ—ଯଦି ସେ କୁକୁର ଏଇନେ କହିବ ଯେ, ମହାପାତ୍ର ନୀଳମଣି ସାହୁକୁ ଏଠୁ କାଢ଼ ? ମୁଁ ପୁରା ଚୁପ୍ ହୋଇଯାଇ ଥିଲି । ଏହିପରି ଥିଲା ତାଙ୍କର ବୁଦ୍ଧି ଓ ବ୍ୟକ୍ତିତ୍ୱ ।

ସାହିତ୍ୟକୁ ଅଖିଳ ବାବୁ ଜୀବନର ଗୋଟେ ଅଂଶ ରୂପେ ବ୍ୟବହାର କରୁଥିଲେ । କିନ୍ତୁ ସେ ବେଶୀଦିନ ସାହିତ୍ୟ କଲେନି ।

ଏଠାରେ ମୁଁ ଆଉ ଗୋଟିଏ କଥା କହିରଖେ । କାଳିଦାସ ଓ ବାଣଭଟ୍ଟ ସଂସ୍କୃତରେ ଦୁଇଜଣ ବଡ଼ କବି । ବଡ଼ ବଡ଼ ସମାଲୋଚକ କହି ଯାଇଛନ୍ତି, ଯଦି ବାଣଭଟ୍ଟ ଜୀବନ ସାଙ୍ଗେ ଏତେ ସଂଶ୍ଲିଷ୍ଟ ହୋଇନଥାନ୍ତେ, ତା'ହେଲେ ଶହେଟି କାଳିଦାସଙ୍କୁ ତାଙ୍କ ଘରେ କ୍ରୀତଦାସ କରି ରଖିଥାନ୍ତେ । ବାଣଭଟ୍ଟଙ୍କର ଏତେ ପ୍ରତିଭା ! ମୁଁ ସେହିପରି କହୁଛି—ଯଦି ଅଖିଳ ପଟ୍ଟନାୟକ ମୋରି ଭଳି ସାହିତ୍ୟ ପାଇଁ ଚେଷ୍ଟା କରିଥାନ୍ତେ ଓ ସମୟ ଦେଇଥାନ୍ତେ ତେବେ ଶହେଟି ମହାପାତ୍ର ନୀଳମଣି ସାହୁକୁ ସେ ତାଙ୍କ ଘରେ କ୍ରୀତଦାସ କରି ରଖିଥାନ୍ତେ । ଏଇଟା ମୁଁ ଲେଖିଛି ମଧ୍ୟ ସମାବେଶରେ ।

ଅତ୍ୟନ୍ତ ସିଧା ଲୋକ ଥିଲେ ସେ । ଅତି ବୁଦ୍ଧିମାନ ବି । କିନ୍ତୁ ତାଙ୍କର ଶେଷ ଜୀବନ ବଡ଼ ରହସ୍ୟପୂର୍ଣ୍ଣ । ତାଙ୍କ ସହିତ ଅନବରତ ମୋର ଦେଖାହେଉ । ବହୁତ କଥା କହୁଥିଲେ । ବୁଝିଲି ଯେ, ସେ ଯିବେଭଳି ବୋଲି ଏତେ କଥା ସବୁ କହୁଥିଲେ । ସେଭଳି ଭଲ, ଉଦାର ବନ୍ଧୁ ଜୀବନରେ ପାଇବା ବାସ୍ତବିକ୍ ଭାଗ୍ୟର କଥା ।

ଗୋପୀନାଥ ମହାନ୍ତି :

ଆଜିର ସଭାରେ ମୁଁ ବଡ଼ ବିଷଣ୍ଣ ! ଏଇଥି ପାଇଁ ଯେ ଅଖିଳମୋହନ ମୋ'ଠାରୁ ଯେ ପାଞ୍ଚ ବର୍ଷ ସାନ, ଆଜିକୁ ୬ ବର୍ଷ ପୂର୍ବରୁ ସେ ଚାଲିଗଲେ ଓ ବଡ଼ ଭାଇ ପରି ମୁଁ ଏବେ ବଂଚିଛି !

ତାଙ୍କ ବାପା ହେଡ଼ମାଷ୍ଟର ବାଙ୍କନିଧି ପଟ୍ଟନାୟକ—ତାଙ୍କ ନାଆଁ ସହିତ ନାନା କିମ୍ବଦନ୍ତୀ ଥିଲା । ଉନ୍ନତ ମାନ, ଆଦର୍ଶ, ଚରିତ୍ର, ରୁଚି, କଠୋର ଶୃଙ୍ଖଳା ଇତ୍ୟାଦି ନାନା କଥା ତାଙ୍କ ନାମ ସହିତ ଜଡ଼ିତ ଥିଲା ।

ତାଙ୍କରି ପରି ତାଙ୍କ ପୁଅ—ଯାହାଙ୍କ ନାଆଁ ଚାରିକଡ଼େ ନାନା ଘଟଣା ରହିଛି । ପ୍ରସିଦ୍ଧ ଆଇନ୍‌ଜୀବୀ ତ ସେ । କିନ୍ତୁ ତା'ଛଡ଼ା ସେ ଜଣେ ଖ୍ୟାତନାମା ସାହିତ୍ୟିକ ।

ତାଙ୍କ ଆତ୍ମା ତ ଝଡ଼—ମୁଁ ଭାବୁଥିଲି ଆମଠାରୁ ଦୂରରେ ତାଙ୍କର ଆତ୍ମା କ'ଣ କେବେ ଶାନ୍ତିରେ ରହି ପାରିବ ? ସେ ନିଶ୍ଚେ ଆଜି ଆମରି ଭିତରେ ଉପସ୍ଥିତ ଅଛନ୍ତି !

ଆଜି ତାଙ୍କୁ ଦେଖିଲା ପରି ଲାଗୁଛି—ତାଙ୍କର ସେ ଠାଣି—ଯେ କି ନମସ୍କାର ଠାରୁ ଅତି ଉର୍ଦ୍ଧ୍ୱରେ ।

ବ୍ୟକ୍ତି ହିସାବରେ ସେ ଥିଲେ ଅତ୍ୟନ୍ତ ସ୍ନେହୀ । ବାଲିଘର ନଥାଉ ଅଖିଳମୋହନ ଯେଉଁଠି ତାଙ୍କ ଘର ସେଇଠି । ନାନା କଥା ସେ କହୁଥିଲେ—ନାନା ଆଲୋଚନା କରୁଥିଲେ । ସାଧାରଣଙ୍କ ଭିତରେ ଥାଇ ବି ଅସାଧାରଣ ଥିଲେ । ପ୍ରତି ବିଷୟରେ ତାଙ୍କର ଏକ ସ୍ପଷ୍ଟ ମତ ଥିଲା ! ନିଜର ରୁଚି ଓ ମାନ-ଥିଲା । ସେ କେବେ ଖୋଜୁନଥିଲେ ଶସ୍ତା ପ୍ରଶଂସା । ସେ ଖୋଜୁଥିଲେ

ଆନ୍ତରିକତା । ତାଙ୍କର ଲେଖା ଭଲ ହେଉଛି ବୋଲି କହିଲେ ସେ କାବା ହେଇ ଅନଉଥିଲେ । ସେ ଜାଣିଥିଲେ ଯେ ଅନେକେ ଲେଖା ନପଢି ଏପରି କହନ୍ତି । ତେଣୁ ଅନଉଥିଲେ ଯେ ତାଙ୍କ ଲେଖାରେ ଆଉ କିଛି ଅଛି କି, ଯାହା ପରିଚୟ ଦେବ ଯେ ସେ ଲୋକ ମୋ ଲେଖାଟି ପଢିଛି !

ମୁଁ ଦେଖିଛି ଯେ ତାଙ୍କ ଚିନ୍ତାଧାରା ଭିତରେ ମଧୁବାବୁଙ୍କ ଦୃଷ୍ଟିଭଙ୍ଗୀ ଥିଲା, କେତେ ପରିମାଣରେ ଫକୀରମୋହନଙ୍କ ଦୃଷ୍ଟିଭଙ୍ଗୀ ବି ଥିଲା ।

ସେ ବେଳେବେଳେ ବଡ଼ ବ୍ୟତିବ୍ୟସ୍ତ ହଉଥିଲେ ଯେ, ବଡ଼ ବିଳମ୍ବ ହେଇ ଯାଉଛି । ଦୁନିଆରେ ସାହିତ୍ୟର ଯେଉଁ ନୂଆ ନୂଆ କଥା ସବୁ ହେଉଛି, ଏଠି କେବେ ତାହା ସବୁ ହେବ ? କିଏ ସେ ଦାୟିତ୍ୱ ନେବ ? ନା ଖାଲି ଅସହାୟ ଭବରେ ଆମେ ଆସି ପୁଣି ଚାଲିଯିବା !

ଆମ ଭାଷାକୁ ସମୃଦ୍ଧ କରିବାକୁ ତାଙ୍କର ଅନେକ ଚେଷ୍ଟା ଥିଲା । ତାହା ପାକଳ ହେଇ ଆସିଲା ବେଳକୁ ସେ ଚାଲିଗଲେ । ତାଙ୍କର 'ଓ ଅନ୍ଧଗଳି' ବହିଟିରେ କେତୋଟି ଗପ ଅଛି, ଯେଉଁ ସ୍ତରକୁ ଅନ୍ୟ ଓଡ଼ିଆ ଗପ ଆଦୌ ଯାଇନାହିଁ । ଏଥିରେ ସାଧାରଣ କଥା ଗୁଡ଼ିକରେ ଏତେ ବ୍ୟଞ୍ଜନା ରହିଛି ଯେ ଭାରି ପ୍ରାଣସ୍ପର୍ଶୀ ହୋଇଛି । ଏ ଗୁଣଟି ଥିଲା କେବଳ ଫକୀର ମୋହନଙ୍କର– କଥାକୁ ଭିତରେ ଜହ୍ୟ ରଖି ଯେ ଲୋକଙ୍କୁ ତା'ଠାରୁ ବହୁତ ଅଧିକ କହୁଥିଲେ । ତେଣୁ ଅଖିଳମୋହନଙ୍କ ଲେଖା ଗୁଡ଼ିକ ବିଷୟରେ ଆହୁରି ଆଲୋଚନା ହେବା ଆବଶ୍ୟକ ।

[ ଏହି ଲିପି, ମୂଳ ଅଭିଭାଷଣଗୁଡ଼ିକର କ୍ୟାସେଟ୍ ରେକର୍ଡ ଅବଲମ୍ବନରେ ପ୍ରସ୍ତୁତ ]

# ଆଜିର ନାଟକ ସଂପର୍କରେ

ଆମେ ଆଜି ମଞ୍ଚସ୍ଥ କରୁଥିବା ନାଟକ "ଆମ କଥା ଆମ ଅବସ୍ଥା" ୧୯୮୬-୮୭ ବର୍ଷରେ, ଭାରତର ତତ୍‌କାଳୀନ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପରିସ୍ଥିତିର ପୃଷ୍ଠଭୂମିରେ ରଚନା କରାଯାଇଛି । ଚିରାଚରିତ ସଜ୍ଞାଠାରୁ ଦୂରେଇ ଯାଇଥିବା ଏହି ନାଟକ ମୁଖ୍ୟତଃ ସେହି ବର୍ଷ ଭାରତୀୟ ପରିସ୍ଥିତିର ଏକ ନାଟକୀୟ ବିବରଣୀ ।

ଏହି ନାଟକରେ ସନ୍ନିହିତ ଘଟଣାବଳି ଦର୍ଶକ ମାନଙ୍କ ପାଇଁ କିଛି ନୂଆ ନୁହେଁ । ପ୍ରତିଦିନର ଖବରକାଗଜ ପଢୁଥିବା ଲୋକମାନଙ୍କ ପାଇଁ ନାଟକର ଘଟଣା ଗୁଡିକ ପୂର୍ବ-ବିଦିତ । ତେବେ, ସାରା ଦେଶରେ ହୋଇଥିବା ଭୟାବହ ମରୁଡ଼ି, ସାମାଜିକ କୁସଂସ୍କାରର ଶିକାର ହୋଇ ରୂପକନ୍‌ଓ୍ୱର୍‌ର ସତୀତ୍ୱ ପ୍ରାପ୍ତି ଓ ରାଜନୀତିର ଘୋଡ଼ାଦଉଡ଼ ଭିତରେ ସାଧାରଣ ମଣିଷର ହନ୍ତସନ୍ତ ଜୀବନ ଇତ୍ୟାଦି-ପରି ଘଟଣା ସବୁର ପୁନଃ-ଉପସ୍ଥାପନର ଆବଶ୍ୟକତା କ'ଣ ?

ଘଟୁଥିବା ଘଟଣା ସବୁ ଗୋଟିଏ ଦିନରେ ଘଟେ ନାହିଁ । ତେଣୁ ଖବର-କାଗଜ ପଢୁଥିବା ବ୍ୟକ୍ତିବିଶେଷ ମାନଙ୍କ ଉପରେ ସେ ସବୁର ସାମଗ୍ରିକ ପ୍ରଭାବ ପଡିବା ସ୍ୱାଭାବିକ ନୁହେଁ । ସେହି ସବୁ ଘଟଣାବଳିକୁ ଏକତ୍ର ସନ୍ନିବେଶିତ କରି ତାହାର ଏକ ସାମଗ୍ରିକ ପ୍ରଭାବ ଦ୍ୱାରା ସାମାଜିକ ଚେତନାକୁ ଆନ୍ଦୋଳିତ କରିବା ଏହି ନାଟକର ମୁଖ୍ୟ ଉଦ୍ଦେଶ୍ୟ ।

ଏହି ନାଟକଟିକୁ ଏକାଦିକ୍ରମେ ଏକମୁଖୀ (ପ୍ରୋସିନିୟମ୍) ଓ ଚତୁର୍ମୁଖୀ ମଂଚରେ ଅଭିନୀତ କରାଯାଇ ପାରିବ । କିନ୍ତୁ ଅଳ୍ପ (ଅତି ବେଶୀରେ ଦେଢ଼ଶହ) ଦର୍ଶକଙ୍କ ପାଇଁ ଚତୁର୍ମୁଖୀ ମଂଚରେ ଏହାର ପରିବେଷଣ ଅଧିକ ପ୍ରଭାବଶାଳୀ ହେବ । ଆଜିର ଉତ୍ସବ ପରିପ୍ରେକ୍ଷୀରେ ଆମେ ଏହାକୁ ଏକମୁଖୀ ମଂଚରେ ପରିବେଷଣ କରୁଛୁ । ଏହାପରେ ଭୁବନେଶ୍ୱର ଓ କଟକର ବିଭିନ୍ନ ସ୍ଥାନରେ ଏହି ନାଟକର ଏକାଧିକ ପରିବେଷଣର ଯୋଜନା କରିଛୁ । ଅବଶ୍ୟ ସେତେବେଳେ ଆମେ ଚତୁର୍ମୁଖୀ ମଂଚକୁ ଅଧିକ ପସନ୍ଦ କରିବୁ । ଫଳରେ, ଦିନ ବେଳା

୨୦'×୨୦' ଆୟତନ ବିଶିଷ୍ଟ ଯେ କୌଣସି ସ୍ଥାନରେ, ଦର୍ଶକମାନଙ୍କୁ ଗ୍ରରିପଟେ ବସାଇ ଅତି କମ୍ ଖର୍ଚ୍ଚରେ ଓ ମାତ୍ର ଘଣ୍ଟାଏ ସମୟ ଭିତରେ ଏହି ନାଟକଟିକୁ ପରିବେଷଣ କରି ହେବ ।

ତେଣୁ ଯେ କୌଣସି ସଂସ୍ଥା/ଅନୁଷ୍ଠାନ ସାମାଜିକ ଦାୟିତ୍ୱକୁ ଆଖି ଆଗରେ ରଖି, ସେମାନଙ୍କ ଆନୁକୂଲ୍ୟରେ ଏହି ନାଟକଟିକୁ ପରିବେଷଣ କରାଇବାକୁ ଗ୍ରହିଁଲେ ଆମ ସହିତ ପତ୍ରାଳାପ କରିପାରନ୍ତି । ଆମ ଠିକଣା :


କଚ୍ଛପ ନାଟ୍ୟ ଆନ୍ଦୋଳନ

'ବାଲିଘର', ଭୁବନେଶ୍ୱର-୭୫୧୦୦୨

ଫୋନ୍–୫୦୮୫୯


## ପ୍ରସ୍ତୁତର ପୃଷ୍ଠଭୂମି ଓ ଅଂଶ ଗ୍ରହଣକାରୀ

| | |
|---|---|
| ପ୍ରଯୋଜନା | କଚ୍ଛପ ନାଟ୍ୟ ଆନ୍ଦୋଳନ |
| ରଚନା ଓ ନିର୍ଦ୍ଦେଶନା | କପିଳାସ ଭୂୟାଁ |
| ସହଯୋଗ | ସୁଭାଷ ଦାସ |
| ବେଶଭୂଷା ଓ ସାଜ ସରଞ୍ଜାମ | ନରୋତ୍ତମ ପରିଡ଼ା ଓ ଚୌଧୁରୀ ଜୟ ପ୍ରକାଶ ଦାସ |
| ଭୂମିକାରେ | ଭଗବତୀ ବସୁ |
| | ଉପେନ୍ଦ୍ର କୁମାର ଦାସ |
| | ଶୁଭକାନ୍ତ ଜେନା |
| | ମାନସ କୁମାର ରାଉତ |
| | ବିଭୁଦତ୍ତ ଦୀକ୍ଷିତ୍ |
| | ଗଣେଶ କୁମାର ମହାପାତ୍ର |
| | ନଳିନୀକାନ୍ତ ପଣ୍ଡା |
| | ପ୍ରତାପ କୁମାର ପଟ୍ଟନାୟକ |
| | ଓ |
| | ସବୁଜ କୁମାର ଦାସ |



# ଅଖିଳମୋହନ ରଚନା-ସମ୍ଭାର

## ପ୍ରକାଶିତ

**ଝଡ଼ର ଈଗଲ ଓ ଧରଣୀର କୃଷ୍ଣସାର**

( ଗଳ୍ପ ସଂକଳନ )

ପ୍ରକାଶକ : ଓଡ଼ିଶା ବୁକ୍ ଷ୍ଟୋର୍, କଟକ

**ଓ ଅନ୍ଧଗଳି**

( କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କୃତ ଗଳ୍ପ ସଂକଳନ )

ପ୍ରକାଶକ : ଅଗ୍ରଦୂତ, କଟକ

**ଅନାଗତ ଫାଲ୍‌ଗୁନ**

( ଲେଖକଙ୍କ ସବୁଜ ତାରୁଣ୍ୟର ପ୍ରେମପତ୍ରର ସଂକଳନ )

ପ୍ରକାଶକ : ଲର୍କ ବୁକ୍‌ସ, କଟକ

**ଅନ୍ୟ ଦେଶ**

( ପ୍ୟାରିସ ଭ୍ରମଣ-ବୃତ୍ତାନ୍ତ )

ପ୍ରକାଶକ : ଶିବାନୀ ପ୍ରକାଶନୀ, କଟକ

**ନଦୀର ନାମ ଗଣତନ୍ତ୍ର**

( ଗଳ୍ପ ସଂକଳନ )

ପ୍ରକାଶକ : ମିଉଜ୍ ବୁକ୍‌ସ, ଭୁବନେଶ୍ୱର

## ପ୍ରକାଶ ଅପେକ୍ଷାରେ

ଗୋଟିଏ ଗଳ୍ପ ସଂକଳନ, ବାଘଗଣୀ ଖଇରୀ,
ଅନୂଦିତ ଉପନ୍ୟାସ ମଧ୍ୟାହ୍ନର ଅନ୍ଧକାର, ଦୁଇଟି ନାଟକ, କଚ୍ଛପାୟ,
ଶେଷପୃଷ୍ଠା, କବିତା ସଂକଳନ ଓ ଅନ୍ୟାନ୍ୟ



*With best compliments from :*

**M/s. Speed Motor Parts**
**& Accessories**

( A House of Accessories )

Cuttack Road, Bhubaneswar

---

*LET THE SOUL OF*

AKHIL BABU

REMAIN IN PEACE

*MANAGEMENT OF :*

**SRI RAMA SAW MILLS**

UNIT - 3, JANPATH

BHUBANESWAR - 7510 01



